PARAJITA KALIDAS
Story by Ajit Kumar Tripathy
Play written by Saroj Mishra
Published by Vidyabharati, Cuttack 753 002

ପ୍ରଥମ ପ୍ରକାଶ ସେପ୍ଟେମ୍ବର ୨୦୦୨

ପ୍ରକାଶକ
ବିଦ୍ୟାଭାରତୀ
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ବଳଦେବ ମହାରଥୀ

ମୁଦ୍ରଣ
ରୟାଲ୍‌ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୩୫.୦୦

ପରଲୋକରେ ଥିବା
ମୋ ବାପାଙ୍କ ପବିତ୍ର ସ୍ମୃତିରେ
ସମର୍ପିତ...

। ସରୋଜ ।

# କାଳିଦାସଙ୍କ ପରାଜୟକୁ ନେଇ ....

ଡଃ ବିଜୟ କୁମାର ଶତପଥୀ

କଥିତ ଅଛି ବିଦ୍ୟାବୁଦ୍ଧିର ପରାକାଷ୍ଠା ପରୀକ୍ଷା କରିବାପାଇଁ ମହାକବି କାଳିଦାସଙ୍କୁ କେହିଜଣେ ପ୍ରେରିତ କରିଥିଲେ କାଶୀନଗରୀ । କାଶୀନଗରୀ ରାଜମାର୍ଗରେ ବାଡ଼ି ଧରି ଗୋଟିଏ ବୃଦ୍ଧା ଚାଲୁଥିଲା ନଇଁ ନଇଁ ମୁଣ୍ଡ ତଳକୁ କରି । କାଳିଦାସ ବୃଦ୍ଧାକୁ ସମ୍ବୋଧନ କରି ପୁଚ୍ଛା କଲେ, ''ଆଲୋ ମାଉସୀ ! ରାସ୍ତାରେ କ'ଣ ହଜିଗଲାକି ? କ'ଣ ଏମିତି ଖୋଜୁଛୁ ଯେ ?'' ବୃଦ୍ଧାଟି ସଙ୍ଗେ ସଙ୍ଗେ ଉତ୍ତର ଦେଇଥିଲା, ''ହଁରେ ପୁଅ, ମୋ ବୟସଗୁଡ଼ାକ ହଜିଯାଇଛି ଯେ ଖୋଜୁଛି, ଟିକିଏ ସାହାଯ୍ୟ କରନ୍ତୁନି ବାପ ?'' ଜୋକ ମୁହଁରେ ଲୁଣ ଦେଲାଭଳି କୁଆଡ଼େ ଚୁପ ରହିଥିଲେ ମହାକବି କାଳିଦାସ ।

କାଳିଦାସଙ୍କ ସମ୍ପର୍କରେ ପ୍ରଚଳିତ ଏହି କାହାଣୀର ଆଲିଗୋରିକାଲ ଉପସ୍ଥାପନ (Allegorical Representation) ଘଟିଛି ଶ୍ରୀଯୁକ୍ତ ଅଜିତ କୁମାର ତ୍ରିପାଠୀଙ୍କର 'ପରାଜିତ କାଳିଦାସ' ଗଳ୍ପରେ । ଆମେ ଜାଣୁ ଯେ ଆଲିଗୋରୀରେ ଦୁଇ ରକମ ବାସ୍ତବତାର (reality) ସଂଯୋଗ ବେଶ୍ ସଫଳତାର ସହ ଫେଣ୍ଟାଫେଣ୍ଟି ହୋଇ ରହିଥାଏ । ଏଠାରେ କୁହାଯାଉଥିବା କାହାଣୀଟି ଯେତିକି ଗୁରୁତ୍ୱପୂର୍ଣ୍ଣ ତା' ଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଏହା ମାଧ୍ୟମରେ ବ୍ୟଞ୍ଜିତ ହେଉଥିବା ଜୀବନସତ୍ୟ, ଶକ୍ତିଶାଳୀ ଅବବୋଧ । ତେଣୁ Surface reality ଅପେକ୍ଷା Inner reality ପ୍ରାଧାନ୍ୟଲାଭ କରେ ଆଲିଗୋରିକାଲ ଉପସ୍ଥାପନ ଶୈଳୀରେ ।

ସଂପ୍ରତି ଅଜିତ କୁମାର ତ୍ରିପାଠୀଙ୍କର ଗଳ୍ପ ଫିଚର ଓ ପ୍ରବନ୍ଧଗୁଡ଼ିକରେ ଏହି ଆଲିଗୋରିକାଲ ଶୈଳୀରେ ଉପସ୍ଥାପନ ବେଶ୍ ଚମତ୍କାର ରୀତିରେ ସାଧିତ ହୋଇଛି ବୋଲି କହିବାକୁ ହେବ । 'ଅଦୃଶ୍ୟ ପୋଷାକ', 'ସକାଳ ନିଶ୍ଚୟ ଆସିବ', 'ଅକୁହା ଇତିହାସ'ରେ ସଙ୍କଳିତ ଗଳ୍ପଗୁଡ଼ିକ ପାଠ କଲେ ଉପରୋକ୍ତ ସତ୍ୟକୁ ଉପଲବ୍ଧି କରିହେବ । ଆକାରରେ କ୍ଷୁଦ୍ର ଶ୍ରୀ ତ୍ରିପାଠୀଙ୍କର ଗଳ୍ପଗୁଡ଼ିକର ବକ୍ତବ୍ୟ ମଧ୍ୟରେ ଏପରି ତୀକ୍ଷ୍ଣ ସମୁଦ୍ୟତ ଛୁରିକା ଆତ୍ମଗୋପନ କରିଥାଏ ଯାହା ପ୍ରୟୋଜନ ସମୟରେ ଦୁରାଚାର ଗ୍ରସ୍ତ, ଅନୀତି ଜର୍ଜରିତ ବ୍ୟକ୍ତି ଓ ସମାଜକୁ ରୁଧିରାକ୍ତ କରିବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ଏଥିପାଇଁ ତାଙ୍କର ଉପରୋକ୍ତ ତିନିଗୋଟିଯାକ ଗ୍ରନ୍ଥରେ ସମାଜ ପରିବର୍ତ୍ତନର ଯେଉଁ ଝଙ୍କାର ରହିଛି ତାହା ହେଉଛି ଶ୍ରୀ ତ୍ରିପାଠୀଙ୍କ ଗଳ୍ପକଳାର ବୈଶିଷ୍ଟ୍ୟ । 'ପରାଜିତ କାଳିଦାସ' ଗଳ୍ପଟିର ମର୍ମ ହେଲା ଯେ ସେଦିନର ସେଇ କାଶୀର ବୃଦ୍ଧା ଓ ନାଗରିକଗଣ ପରବର୍ତ୍ତୀ ପର୍ଯ୍ୟାୟରେ ଆମର ଏଇଠି କିମ୍ବା ଭାରତବର୍ଷରେ କୋଉଠି ନା କୋଉଠି ଟ୍ୟାକ୍ସିଚାଳକ କିମ୍ବା ପ୍ରଶ୍ନପତ୍ର ଚୋରି କରି ବିକୁଥିବା ପିଅନ ଭାବେ ଜନ୍ମ ନେଇଛନ୍ତି ଓ ଆଧୁନିକ କାଳର ବିଦ୍ୱାନ କାଳିଦାସମାନଙ୍କୁ ବାରମ୍ବାର ପରାଜିତ କରୁଛନ୍ତି । ପୁନଶ୍ଚ ଏକଦା କାଳିଦାସ ବି ମୂର୍ଖ ଥିଲେ । ସେ ଡାଳ ଅଗରେ ବସି ମୂଳକୁ କାଟିଲା ପରି ପରସ୍ପରର ଗୋଛି କାଟିବାରେ ବ୍ୟସ୍ତ ଆଜିର କାଳିଦାସମାନେ ।

'ସକାଳ ନିଶ୍ଚୟ ଆସିବ' ସଙ୍କଳନର ଏହି 'ପରାଜିତ କାଳିଦାସ' ଗଳ୍ପକୁ ଗ୍ରହଣ କରି ସାଂପ୍ରତିକ କାଳର ଆଉଜଣେ ଗାଳ୍ପିକ ଓ ପ୍ରତିଭାଧର ନାଟ୍ୟକାରଭାବରେ ବିଦିତ ସରୋଜ ମିଶ୍ର ନାଟକଟିଏ ରଚନା କରିଛନ୍ତି । ନାଟକ ରଚନା ଏକ ଜଟିଳ କଳାଶିଳ୍ପ ନିଶ୍ଚୟ । ଆହୁରି ଜଟିଳ କୌଣସି କାହାଣୀ ବା ଉପନ୍ୟାସକୁ ନାଟ୍ୟରୂପ ପ୍ରଦାନ କରିବା । ତାର କାରଣ ହେଲା କାହାଣୀ ବା ଉପନ୍ୟାସର ବକ୍ତବ୍ୟକୁ ଠିକ୍ ରଖି ସେହି ଅନୁଯାୟୀ ଦୃଶ୍ୟରୂପ (visual image) ଓ ସଂଳାପ ସଂଯୋଜନା କରିବାକୁ ପଡ଼େ ନାଟକରେ । ଏଥିପାଇଁ ନାଟ୍ୟକାରକୁ ଖଣ୍ଡାଧାରରେ ଚାଲିବାକୁ ହେବ । ଗଳ୍ପର ମୂଳସ୍ୱର ଠିକ୍ ଝଙ୍କୃତ ହେଉଥିବ, ଏଣେ ଦୃଶ୍ୟ ପରେ ଦୃଶ୍ୟର ଅବତାରଣା ହେଉଥିବ । ଗଳ୍ପର କ୍ଷୁଦ୍ର ପରିସୀମାକୁ ଦରକାର ବେଳେ ବ୍ୟାପ୍ତ କଲେବି ଓ ଚରିତ୍ର ଚିତ୍ରଣରେ ପରିବର୍ତ୍ତନ ସ୍ଥଳ ବିଶେଷରେ କରୁଥିଲେ ବି ଗଳ୍ପର ବାର୍ତ୍ତା ଆଗପରି ସେମିତି ରହୁଥିବ - ସତରେ ନାଟ୍ୟକାରପାଇଁ ଏହା କଠୋର ପରୀକ୍ଷା ନିଶ୍ଚୟ ।

ନାଟ୍ୟକାର ସରୋଜ ମିଶ୍ର ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । 'ତିନୋଟି ନାଟକ' (୧୯୯୪), 'ଆହତ ଆଲୋକ' (୧୯୯୭), 'ନିର୍ବାଚିତ ବେତାର ନାଟକ' (୧୯୯୯), 'ମୋକ୍ଷ' (୨୦୦୦), 'ଅବ୍ୟକ୍ତ ପ୍ରତୀକ୍ଷା' (୨୦୦୧) ପ୍ରଭୃତି ପ୍ରକାଶିତ ନାଟକ ପୁସ୍ତକଗୁଡ଼ିକ ତାଙ୍କ ପ୍ରତିଭାର ସ୍ୱାକ୍ଷର ବହନ କରନ୍ତି । ମୂଳ ଗଳ୍ପଟିକୁ ଆବଶ୍ୟକସ୍ଥଳେ ସେ ପରିବର୍ଦ୍ଧନ କରିଛନ୍ତି । ନାଟ୍ୟକଳା ଦୃଷ୍ଟିରୁ ଯଥାସମ୍ଭବ ସ୍ଥାନୀୟ ରଙ୍ଗରେ ରଙ୍ଗେଇଛନ୍ତି ଯାହାକୁ କୁହାଯାଇପାରିବ Local Colour । Improvisation ରୀତିରେ ସେ ଚାରିପୃଷ୍ଠାର ଏକ କ୍ଷୁଦ୍ରଗଳ୍ପକୁ ଦଶଗୋଟି ଦୃଶ୍ୟ ସମ୍ବଳିତ ନାଟକରେ ପରିଣତ କରିଛନ୍ତି । ମୂଳ କାହାଣୀଟିର ବାର୍ତ୍ତାକୁ ସେ ଧରିରଖିଛନ୍ତି କେବଳ ନାଟ୍ୟ ସଂଗଠନରେ (dramatic structure) ଯାହା ପରିବର୍ତ୍ତନ ସାଧିତ ହୋଇଛି ।

ମୂଳ ଗଳ୍ପରେ ଡଃ ବ୍ରଜେଶ ମୋହନଙ୍କ ନେତୃତ୍ୱରେ ଗଠିତ ସ୍କ୍ୱାର୍ଡ କିପରି ଶମ୍ଭୁନାଥପୁର ଷ୍ଟେସନରେ ଓହ୍ଲାଇ ସେଠାରୁ ମୁକ୍ତିଆର ପାଟଣା କଲେଜ ଓ ପରେ ବୈଦ୍ୟନାଥ ଗାଇକୋଓ୍ୱାର୍ଡ଼ କଲେଜକୁ ଗସ୍ତ କରିଛନ୍ତି ତା'ର ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ନିର୍ଦ୍ଦିଷ୍ଟ ସମୟରେ ପରୀକ୍ଷା ଚାଲିଥିଲାବେଳେ ଫ୍ଲାଇଂ ସ୍କ୍ୱାର୍ଡ଼ଟିମ୍ ପରୀକ୍ଷାକେନ୍ଦ୍ରମାନଙ୍କରେ ପହଞ୍ଚି ପାରି ନ ଥିଲେ । ତା'ର କାରଣ ହେଲା କେଉଁଠି ସ୍ଥାନୀୟ ଲୋକମାନଙ୍କର ଚକ୍ରାନ୍ତରେ ସ୍କ୍ୱାର୍ଡ଼ଟିମ୍ ଦିଗ୍‌ଭ୍ରାନ୍ତ ହେଉଥିଲେ ତ ଆଉ କେଉଁଠି ଡ୍ରାଇଭରର ନାନାଦି ବେମାରିମାନ ବାହାରିଥିଲା । ପୁଣି ତା' ସାଙ୍ଗକୁ ଭଡ଼ାରେ ନେଇଥିବା ଟ୍ୟାକ୍ସିର ବେମାରି ମଧ୍ୟ । ଆହୁରି ମଧ୍ୟ କେତେକ ସ୍ଥାନରେ ଦାଦାବଟି ଦିଆଯାଇ ନ ପାରିବାରୁ ଟ୍ୟାକ୍ସିକୁ ରାସ୍ତାରେ ଦୁଇଘଣ୍ଟାକାଳ ଅଟକାଇ ଦିଆଯାଇଥିଲା । ଏସବୁ ଘଟଣାଗୁଡ଼ାକ ଯେ ପୂର୍ବ ପରିକଳ୍ପିତ ତାହା ଡଃ ବ୍ରିଜେଶ୍ ମୋହନ ଓ ତାଙ୍କର ସହକର୍ମୀମାନେ ଅନୁଭବ କରିଥିଲେ । ଗୁଣୀଜନଙ୍କୁ କେମିତି ଭୁଆଁ ବୁଲାଇ ଦିଆଯାଇପାରେ ଓ ବୋକା ବନେଇ ଦିଆଯାଇପାରେ ଏହା ଥିଲା ତା'ର ଏକ ଦୃଷ୍ଟାନ୍ତ ।

ଏଇ କାହାଣୀର ନାଟ୍ୟରୂପ ପ୍ରସ୍ତୁତ କଲାବେଳେ ନାଟ୍ୟକାର ସରୋଜ ମିଶ୍ର ଘଟଣା ଓ ଚରିତ୍ର ସଂସ୍ଥାନରେ ପୁଣି ଚରିତ୍ରମାନଙ୍କର ନାମକରଣରେ ଆବଶ୍ୟକୀୟ

ପରିବର୍ତ୍ତନମାନ ଆଣିଛନ୍ତି । ମୂଳଗଳ୍ପରେ ପ୍ରତିଭାତ ହୋଇଉଠୁଥିବା ମୂଲ୍ୟବୋଧର ବିପର୍ଯ୍ୟୟ ସାଙ୍ଗକୁ ଏକ ଅଙ୍ଗୀକାରବୋଧକୁ ସେ ଉକୁଟାଇବାପାଇଁ ଚାହିଁଛନ୍ତି । ଗଳ୍ପ ତୁଳନାରେ ନାଟକର କାହାଣୀ ପରିବ୍ୟାପ୍ତ ହୋଇଛି ଓ ସେହି ଅନୁସାରେ ନାଟ୍ୟଦ୍ୱନ୍ଦ୍ୱ ମଧ୍ୟ ପ୍ରଥମରୁ ପ୍ରକଟିତ ହୋଇଛି । କ୍ଷୁଦ୍ରଗଳ୍ପରେ ସଂଘାତ ଅନେକ ସମୟରେ କ୍ଲୁପ୍ତ ଓ ଅନ୍ତର୍ନିହିତ ହୋଇଥିଲାବେଳେ ନାଟକରେ ତାହା ତୀବ୍ର ଓ ସ୍ପଷ୍ଟ ହୋଇଥାଏ । ଦୁଇ ପରସ୍ପର ବିରୋଧୀ ଶକ୍ତିର ସଂଘାତ ମଧ୍ୟରେ ଯେଉଁ ଚାରିତ୍ରିକ ବିକାଶ ସଂସାଧିତ ହୁଏ ନାଟ୍ୟକାର ତାକୁ ଧରିରଖେ । ମୂଳଗଳ୍ପ 'ପରାଜିତ କାଳିଦାସ'ରେ ରୂପ ପାଇଥିବା ମୂଲ୍ୟବୋଧର ବିପର୍ଯ୍ୟୟକୁ ଅଧିକ ସ୍ପଷ୍ଟ କରିବାପାଇଁ ନାଟ୍ୟକାର ତେଣୁ ସୁରପ୍ରତାପ ଚରିତ୍ର ସହ ନେତ୍ରାନନ୍ଦ ଓ ବୁଦ୍ଧିଆ ପରି ଚରିତ୍ରମାନଙ୍କୁ ସୃଷ୍ଟି କରିଛନ୍ତି ।

ସୁରପ୍ରତାପ ହେଉଛନ୍ତି ନୀତିନିଷ୍ଠ ଓ ଆଦର୍ଶବାଦୀ । ଶିକ୍ଷାର ପ୍ରସାର ନିମିତ୍ତ ନିଜ ଅଞ୍ଚଳରେ ସେ କଲେଜଟିଏ ଖୋଲିଥିଲେ । ସେଥିପାଇଁ ଯଥେଷ୍ଟ ତ୍ୟାଗ ସ୍ୱୀକାର କରିଥିଲେ ମଧ୍ୟ । ତାଙ୍କ ମାଆଙ୍କ ନାମରେ ପ୍ରତିଷ୍ଠିତ ଏଇ କଲେଜପାଇଁ ସେ ଜମିବାଡ଼ି ଦାନ କରିବା ସହିତ ଅକାତରରେ ଦେଇ ଚାଲିଥିଲେ ଅଜସ୍ର ଅର୍ଥ । ସୁରପ୍ରତାପଙ୍କ ସ୍ୱପ୍ନ ସାକାର ହେଲା । କଲେଜ ଖୋଲିଲା, ପିଲାମାନେ ପାଠ ପଢ଼ିଲେ । ତେବେ ଗୋଟିଏ କଥାର ଅସଦ୍‌ଭାବ ସେ ଦେଖିଲେ । ତାହା ହେଲା ଯେ ସେହି ଶିକ୍ଷାନୁଷ୍ଠାନଟି ମାନବ ଚରିତ୍ର ଗଠନ ଦିଗରେ ସହାୟକ ହେବା ପରିବର୍ତ୍ତେ ଚାରିତ୍ରିକ ଅଧୋଗତିର ପ୍ରତିଭୂ ହୋଇ ଠିଆ ହେବାକୁ ଲାଗିଲା । ସଂକୀର୍ଣ୍ଣ ରାଜନୀତିର ଦୂଷିତ ପଙ୍କ ବୋଳିହେବାକୁ ଶ୍ରେୟ ମଣିଲେ କଲେଜ ପରିଚାଳନା ସମିତିର ସଭ୍ୟଗଣ, ଆଖପାଖରେ କୁଜି ନେତାମାନେ ପୁଣି ସେଠି ପାଠପଢୁଥିବା ଦେଶର ଭବିଷ୍ୟତ ନାଗରିକଗଣ । ଉପେକ୍ଷିତ ହୋଇପଡ଼ିଲେ କଲେଜର ପ୍ରତିଷ୍ଠାତା ସୁରପ୍ରତାପ । ତାଙ୍କୁ ମଧ୍ୟ ଅସୁନ୍ଦର କୌଶଳ ପ୍ରୟୋଗ କରି ଏକରକମ ମାନେଜମେଣ୍ଟରୁ ନିକାଲି ଦିଆଯାଇଛି । ନାଟକର ପ୍ରାରମ୍ଭ ହୋଇଛି ସୁରପ୍ରତାପଙ୍କ ଅନ୍ତର୍ଦାହ ମଧ୍ୟରୁ । ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି - "ଏ ଦେଶରେ କିଛି ଆଉ ହବନି । ମଣିଷ ବଞ୍ଚିବା କଷ୍ଟ । ଦୁର୍ନୀତିର ଚେର ଉପରୁ ତଳଯାଏ ମାଡ଼ିଗଲାଣି ସାଂଘାତିକ ଆକାରରେ । ତାକୁ ଯିଏ ଉପାଡ଼ିବାକୁ ଚାହିଁବ ନିଜେ ମରିବ । ଆତ୍ମସାତ୍ ଯେଉଁଠି ଆଇନସମ୍ମତ, ଅନୀତି ଯେଉଁଠି ନୀତି ସେ ଦେଶରେ ଆଦର୍ଶ କଥା ଉଚ୍ଚାରଣ କରିବା ଲଙ୍କାରେ ହରି ଶବ୍ଦ ପରି ବୋକାମି ଆଉ ପାଗଳାମି ।"

ସରପଞ୍ଚ ନେତରା ଓରଫ୍ ନେତ୍ରାନନ୍ଦ ଓ ତା'ର ସହଚର ବୁଦ୍ଧିଆ ଏବେ ଆଧିପତ୍ୟ ବିସ୍ତାର କରିଛନ୍ତି କଲେଜରେ । ଯେପରିକି ମଫସଲ ଅଞ୍ଚଳର ସେ କଲେଜଟି ସେମାନଙ୍କର ଯାବତୀୟ ଦୁଷ୍ଟ ଓ କେଳେଙ୍କାରୀ କାର୍ଯ୍ୟକଳାପର ପ୍ଲାଟଫର୍ମ ପାଲଟିଯାଇଛି । ଏବେ ଛତୁ ଫୁଟିଲାପରି ପ୍ରାୟ ଓଡ଼ିଶାରେ ଯେଉଁସବୁ କଲେଜମାନ ଗଢ଼ିଉଠିଛନ୍ତି ସେଗୁଡ଼ିକ ଆଉ ଶିକ୍ଷାର ମନ୍ଦିର ନ ହୋଇ କିପରି ରାକ୍ଷସମାନଙ୍କର ମନ୍ଦିରରେ ପରିଣତ ହୋଇଛନ୍ତି ତା'ର ବାସ୍ତବ ଚିତ୍ର ଯାହା ଅଜିତ କୁମାର ତ୍ରିପାଠୀଙ୍କର ଗଳ୍ପରେ ଉତ୍କୀର୍ଣ୍ଣ ତାକୁ ଆହୁରି ପ୍ରାଞ୍ଜଳ ଓ ସ୍ପଷ୍ଟ କରିବାକୁ ଉଦ୍ୟମ କରିଛନ୍ତି ନାଟ୍ୟକାର ଶ୍ରୀ ମିଶ୍ର । ଦୃଶ୍ୟରୂପ ପ୍ରସ୍ତୁତ ବେଳେ ଏସବୁ ଅପରିହାର୍ଯ୍ୟ ହୋଇଥାଏ ।

ପୁଣି ଏସବୁ କଲେଜମାନଙ୍କରେ ପରୀକ୍ଷା କେମିତି ଚାଲୁଥାଏ ତା'ର ଚିତ୍ର ପ୍ରଦତ୍ତ । ପ୍ରଚୁର ଟଙ୍କା ଆଦାୟ ହୋଇ କପି ହୁଏ ନିର୍ଦ୍ଧୂମ । ପୁଣି ଏସବୁର ନିରାକରଣ ପାଇଁ ଯେଉଁ ସ୍କ୍ୱାର୍ଡ଼ ପାର୍ଟି ଆସନ୍ତି ସେମାନଙ୍କୁ ଯୋଜନାବଦ୍ଧ ଭାବରେ ହଇରାଣ ହରକତ କରାଯାଏ, ଭୁଆଁ ବୁଲାଯାଏ । କଲେଜର ପିଅନମାନଙ୍କଠାରୁ ଆରମ୍ଭକରି ଅଧକ୍ଷ, ଅଧ୍ୟାପକ ପୁଣି ମ୍ୟାନେଜମେଣ୍ଟର ସଭ୍ୟମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଏଥିରେ ସଂପୃକ୍ତ । ଏଥିପାଇଁ ସେମାନେ ପରସେଣ୍ଟେଜ୍ ମଧ ପାଆନ୍ତି । ପିଲାମାନଙ୍କୁ ପରୀକ୍ଷା ହଲ୍‌ରେ ଉତ୍ତରମାନ ଡାକି ଦିଆଯାଏ । ମୋଟ ଉପରେ ନୀତିନିୟମର ତଣ୍ଟିଚିପି ଯାବତୀୟ ଦୁରାଚାରଗୁଡ଼ିକ ସେଠାରେ ପ୍ରଶ୍ରୟ ଦିଆଯାଏ । ସୁରପ୍ରତାପ ପ୍ରତିଷ୍ଠା କରିଥିବା କଲେଜରେ ତାହାହିଁ ଘଟିଛି । ସେ ନୀରବଦ୍ରଷ୍ଟା ସାଜିବା ଛଡ଼ା ଅନ୍ୟ ଗତି ନାହିଁ । ଭେକମାନଙ୍କର ବିକଟ ରବରେ ସେ ନୀରବ ପିକଟିଏ ହୋଇଯାଇଛନ୍ତି । ସେଠାକୁ ବ୍ରଜକିଶୋର, ଆନନ୍ଦ ଓ ଚୌଧୁରୀ ପ୍ରଭୃତି ସ୍କ୍ୱାର୍ଡ଼ ପାର୍ଟିରେ ଗଲାବେଳେ ସେମାନେ ଯେପରି ପରୀକ୍ଷାକେନ୍ଦ୍ରରେ ପହଞ୍ଚି ନ ପାରିବେ ସେଥିପାଇଁ ବ୍ୟବସ୍ଥାମାନ ଗ୍ରହଣ କରାଯାଇଛି । ଡଃ ବ୍ରଜକିଶୋର, ଆନନ୍ଦ ଓ ଚୌଧୁରୀ ଏମାନେ କପି ରୋକିବାପାଇଁ ଆସିଲେ ବି ବିଫଳ ହୋଇଛନ୍ତି ।

ନିଜ ହାତଗଢ଼ା ଅନୁଷ୍ଠାନର ଏ ବିପର୍ଯ୍ୟୟ ସୁରପ୍ରତାପଙ୍କ ମନରେ ଦୁଃଖ ଓ କ୍ଷୋଭ ସୃଷ୍ଟି କରିଛି ସତ କିନ୍ତୁ ସେ ଭାଙ୍ଗି ପଡ଼ି ନାହାନ୍ତି । ତାଙ୍କର ଉପଲବ୍ଧି ହୋଇଛି ଯେ ଏ ସମୟ ବଦଳିଯିବ । ସକାଳ ନିଶ୍ଚୟ ଆସିବ । ପରିବର୍ତ୍ତନର ସୁଅ ଆଗରେ ଏସବୁ ନିଶ୍ଚିହ୍ନ ହୋଇଯିବ । ନାଟକର ପରିସମାପ୍ତି ବେଳକୁ ତାଙ୍କର ଉପଲବ୍ଧି ସେ ପତ୍ନୀ ରମାବୋଉକୁ ଏହିପରି କହିଛନ୍ତି - ''ହେଲେ ଏ ସମୟ ସବୁଦିନପାଇଁ ରହିବ ନାହିଁ । ଦିନ ଆସିବ - ସବୁ କାଳିଦାସମାନେ ଏକଜୁଟ ହୋଇ କାନ୍ଧରେ କାନ୍ଧ ମିଶାଇ ଆଜିର ଅସୁରମାନଙ୍କର ମୁକାବିଲା କରିବେ । ଯୁଗେ ଯୁଗେ ପାପୀମାନଙ୍କର ବିନାଶ ଘଟୁଛି । ଆଜିବି ଘଟିବ । ଦେଖ ! ଦେଖ ସିନ୍ଦୂରା ଫାଟିଲାଣି । ସୂର୍ଯ୍ୟ ଉଦୟ ହେବ, ସକାଳ ନିଶ୍ଚୟ ଆସିବ ।''

ମୂଳ ଗଳ୍ପ ପରି ନାଟକରେ କୌଣସି ଆଇଡିଆଲିଷ୍ଟିକ୍ ପରିଣତି ଟଣାଯାଇ ନାହିଁ । କଳାତ୍ମକତାକୁ ରକ୍ଷାକରି ପ୍ରତିପାଦନ କରାଯାଇଛି ଯେ କାଳିଦାସମାନଙ୍କର ଏଇ ପରାଜୟ ଯେପରି ବିଜୟ ପର୍ବ ପାଇଁ ଏକ ପ୍ରସ୍ତୁତି । ନାଟକର ସଙ୍ଗଠନ ପୁଣି ମଞ୍ଚାୟନ କୌଶଳରେ ଯେଉଁ ଉପାଦାନଗୁଡ଼ିକ ଗର୍ଭିତ ସେଥିରେ କୌଣସି ବିଚ୍ୟୁତି ଦେଖିଲି ନାହିଁ । ସଂଳାପ ଶାଣିତ, ସ୍ଥଳ ବିଶେଷରେ ଆବେଗଧର୍ମୀ । ନାଟକଟି ମଧ ମଞ୍ଚସ୍ଥ ହୋଇ ଦର୍ଶକମାନଙ୍କର ପ୍ରିୟଭାଜନ ହୋଇପାରିଛି । ଏବେ ସାଂପ୍ରତିକ ଘଟଣାବଳୀକୁ ଆଧାରକରି ଭ୍ରଷ୍ଟାଚାରୀ ମଣିଷମାନଙ୍କ ପିଠିରେ ଚାବୁକ ଦେଲାପରି କିମ୍ବା ତାତିଲା ନିଆଁର ଚେଙ୍କ ଦେଲାପରି ଗଳ୍ପ ଲେଖୁଥିବା ଅଜିତ କୁମାର ତ୍ରିପାଠୀ ଓ ତାଙ୍କର ଏହିପରି ଏକ ଗଳ୍ପକୁ ନାଟ୍ୟରୂପ ଦେଇ ସଫଳ ହୋଇଥିବା ନାଟ୍ୟକାର ସରୋଜ ମିଶ୍ରଙ୍କୁ ଏହି ଅବସରରେ ସାଧୁବାଦ ଜଣାଉଛି । ନଚେତ୍ ରାତି ପାହିବନି, ପ୍ରାଚୀଗଗନ ଉଦ୍‌ଭାସିତ ହେବନି ଲୋହିତ ଆଲୋକରେ ।

ଓଡ଼ିଆ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର

# କଥାକାରଙ୍କ ବକ୍ତବ୍ୟ ...

ନିଜେ ଭଲ ଥିଲେ ଦୁନିଆ ଭଲ - ଏ କଥାଟି ହୁଏତ କେବେ ସତ ଥିଲା, କିନ୍ତୁ ଏବେ ସତ ନୁହେଁ । ନିଷ୍କ୍ରିୟ ସଜ୍ଜନତା ଆଜିକାଲି ଯୁଗରେ ଯେ କେବଳ ଅଲୋଡ଼ା ଓ ଅପର୍ଯ୍ୟାପ୍ତ ତା' ନୁହେଁ, ଏହା ଆମକୁ ସାମାଜିକ ନିରାପତ୍ତା ଯୋଗାଇବା ଦିଗରେ ମଧ୍ୟ ଏକାନ୍ତ ଅକ୍ଷମ । ସକ୍ରିୟ ଦୁର୍ଜନତା ଆଗରେ ଅତି ବିକଳ ଭାବରେ ଆଜି ହାର ମାନିଛି ଏହି ନିଃସଙ୍ଗ ସଜ୍ଜନତା । ଏଥିରେ କିନ୍ତୁ ହତୋତ୍ସାହ ହେବା କଥା ନୁହେଁ ।

ଆମେ ନିଜେ ଭଲ ରହିବା ଏବଂ ଆଶା କରିବା ଦୁନିଆ ଆମକୁ ଭଲ ରହିବାକୁ ଛାଡ଼ିଦେଉ - ଏ ଦୁଇଟି ଏବେ ପରସ୍ପର ବିରୋଧୀ ହୋଇଗଲାଣି । ତେଣୁ ସମୟ ଆସିଛି ସଜ୍ଜନମାନଙ୍କୁ ନିଷ୍କ୍ରିୟତା ପରିହାର କରି ଏକଜୁଟ ହେବାକୁ ପଡ଼ିବ । ଆପଣା ମହତକୁ ମିଳିତ ଭାବରେ ରକ୍ଷା କରିବାର ସମୟ ଆସିଛି । ମୋର ଗଳ୍ପଟି ଏବଂ ତା'ଠାରୁ ଅନେକ ଗୁଣରେ ପରିମାର୍ଜିତ ଓ ପରିଶୋଭିତ ସରୋଜବାବୁଙ୍କର ନାଟକଟି ଯଦି ସଜ୍ଜନମାନଙ୍କ ନିକଟରେ ଉପରୋକ୍ତ ବାର୍ତ୍ତାଟି ପହଞ୍ଚାଇବାରେ ସକ୍ଷମ ହୁଏ ତେବେ ଦୁହିଁଙ୍କର ପରିଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

ସକାଳ ନିଶ୍ଚୟ ଆସିବ । ସେ ସମୟ ପର୍ଯ୍ୟନ୍ତ ସଜ୍ଜନମାନଙ୍କୁ ସଂଘର୍ଷ କରି ବଞ୍ଚି ରହିବାକୁ ହେବ । ଦୁର୍ଜନମାନେ କେବେହେଲେ ଅଦୃଶ୍ୟ ପୋଷାକ ପିନ୍ଧିଥିବା ରାଜାଙ୍କୁ ଉଲଗ୍ନ ବୋଲି କହିବେ ନାହିଁ । ଏହି ସଜ୍ଜନତା ଓ ଦୁର୍ଜନତାର ସଂଘର୍ଷମୟ ଦିନଗୁଡ଼ିକର ଅକୁହା ଇତିହାସ କହିଯିବେ ଗାଳ୍ପିକ ଓ ନାଟ୍ୟକାରମାନେ; କେହି ଶୁଣନ୍ତୁ ବା ନ ଶୁଣନ୍ତୁ ଯାଏ ଆସେ ନାହିଁ ।

ବନ୍ଧୁ ସରୋଜ ମିଶ୍ରଙ୍କ ନିକଟରେ କୃତଜ୍ଞତା ଜଣାଇବା ପାଇଁ ମୋ ପାଖରେ ଭାଷା ନାହିଁ ।

ଅଜିତ କୁମାର ତ୍ରିପାଠୀ

# ନିଜ ସଂଳାପ

ଏହା ନିଶ୍ଚିତ ଯେ ଆତ୍ମଦୃଷ୍ଟି, ଆତ୍ମବିଶ୍ୱାସ ଓ ଈଶ୍ୱରଙ୍କ ଆଶୀର୍ବାଦ ପ୍ରତିଟି ସୃଷ୍ଟି ସଂଭାର ପଛରେ ରହିଛି । ସତ୍ୟ ଅନୁସନ୍ଧାନୀ ସାହିତ୍ୟିକ ତା'ର ସୃଜନର ପରିବ୍ୟାପକତା ଭିତରେ ଅହରହ ଜଡ଼ିତ । ଅନୁଭୂତିର ଆଭରଣ ଯେତେ ମାର୍ମିକ, ଯନ୍ତ୍ରଣାଦାୟକ ବୋଧହୁଏ ସୃଜନର ସିଦ୍ଧି ସେତେ ମନଛୁଆଁ ଏବଂ କାଳଜୟୀ ।

ସାହିତ୍ୟ ସୃଷ୍ଟିରେ ସମସ୍ତେ ହେଉଛନ୍ତି ଶିକ୍ଷାନବିସ । କେହି ଜଣେ ହେଲେ ଶିକ୍ଷକ ପଦବାଚ୍ୟ ନୁହନ୍ତି । ଲେଖାର ପରିପୁଷ୍ଟତା ଲାଗି ଅନ୍ୱେଷାର ପ୍ରଭାବ ମୋ ଅନୁସନ୍ଧିତ୍ସୁ ମନରେ ପ୍ରବଳ । ବୋଧହୁଏ ଏ ଅନ୍ୱେଷଣ ସରିବ ନାହିଁ । ମଲା ପର୍ଯ୍ୟନ୍ତ ଚାଲିବ ... କିନ୍ତୁ ୟୁରେକା ମିଳିବନି ।

ଖୋଜି ହେଉଥିବାର ପ୍ରବୃତ୍ତି ଅନ୍ୱେଷାର ଆକାଂକ୍ଷା ଭିତରେ ଏମିତି ଏକ ମଣିଷ ସହିତ ସାକ୍ଷାତ୍ ହେଇଥିଲା ତାହା କେବେ ବି ଭୁଲିହେବନି । ସାକ୍ଷାତ୍ରୁ ପରିଚୟ; ଅପୂର୍ବ ବନ୍ଧୁତ୍ୱର ବେଢ଼ି ହୁଏତ ଅଧୁନା ବସ୍ତୁବାଦୀ ସଭ୍ୟତାରେ ଯୋଉଠି ମାନବୀୟ ମୂଲ୍ୟବୋଧ ଆଉ ସାମାଜିକ ସ୍ଥିତିର ଦ୍ରୁତ ଅବକ୍ଷୟ ଚାଲିଛି ସେଠି ସେ ସମ୍ପର୍କ ଓ ବନ୍ଧୁତ୍ୱ ସେତୁର ସୀମାରେଖାକୁ ମପାଯାଇପାରେନା । ଏପରି ବନ୍ଧୁତ୍ୱ, ମୋର ଶ୍ରୀ ଅଜିତ କୁମାର ତ୍ରିପାଠୀଙ୍କ ସହ । 'ପରାଜିତ କାଳିଦାସ' ଗଳ୍ପଟି ଲେଖିସାରିବା ପରେ ତାଙ୍କର ବହୁ ଗଳ୍ପର ପ୍ରଥମ ପାଠକ ଭାବରେ ମୋର ପରମ ହିତୈଷୀ ବନ୍ଧୁ ଓଡ଼ିଶାର ଲବ୍ଧପ୍ରତିଷ୍ଠ ଗାଳ୍ପିକ, ପ୍ରତିଶ୍ରୁତିସଂପନ୍ନ ପ୍ରାବଂଧିକ ଓ ସୁ ପ୍ରଶାସକ ଅଜିତ କୁମାର ତ୍ରିପାଠୀ ମତେ ପଢ଼ି ଶୁଣାଉଥିବା ଅବସରରେ ମୁଁ ସ୍ୱତଃ କହିଦେଇଥିଲି ଯା'ର ନାଟ୍ୟ ରୂପାନ୍ତର କଲେ କେମିତି ହୁଅନ୍ତା ।' ସେ କହିଥିଲେ 'ସେ ଦାୟିତ୍ୱ ତୁମର ।'

ତା' ପରେ ଅନେକ ଦିନ ଗଡ଼ିଛି । ତାଙ୍କର ଦ୍ୱିତୀୟ ଗଳ୍ପ ସଂକଳନ 'ସକାଳ ନିଶ୍ଚୟ ଆସିବ' ରେ ଏଇ ଗଳ୍ପଟି ପ୍ରକାଶ ପାଇଛି, କିନ୍ତୁ ମୋ ଅନ୍ୱେଷା ସରି ନ ଥାଏ । ନାଟକର ଚରିତ୍ର, ପାତ୍ରମୁଖୀ ସଂଳାପର ପ୍ରୟୋଗ ଓ ଦ୍ୱନ୍ଦ୍ୱ କିପରି ହେବ ଧୀରେ ଧୀରେ ମୋ ମନରେ ଜମାଟ ବାନ୍ଧିଲା । ପ୍ରଥମେ ବେତାର ନାଟ୍ୟ ରୂପାନ୍ତର ଓ ପରେ ପରେ ମଞ୍ଚ ପାଇଁ ନାଟକଟି ଲେଖା ସରିଲା । ରବୀନ୍ଦ୍ର ମଣ୍ଡପରେ ମଞ୍ଚାୟନ ପରେ ଶ୍ରେଷ୍ଠ ପାଣ୍ଡୁଲିପି ପୁରସ୍କାର ପାଇଲା । ସ୍ୱନାମଧନ୍ୟ ନାଟ୍ୟକାର ସମାଲୋଚକ ଡଃ ରମେଶ ପ୍ରସାଦ ପାଣିଗ୍ରାହୀ ଏହି ନାଟକର ଦର୍ଶକ ତଥା ବିଚାରକ ଭାବରେ କହିଥିବା ପ୍ରତିକ୍ରିୟା ଏଠାରେ ସ୍ମରଣ କରୁଛି - ''କ'ଣ ସରୋଜ ! ତମେ ବେଶ୍ ପୁରାତନ ଢଗଢମାଳି ପ୍ରୟୋଗ କରି ନାଟକଟିର ସଂଳାପ ଚାତୁରୀକୁ ଆକର୍ଷଣୀୟ କରିଛ । ଧନ୍ୟବାଦ...'' ସଂଭ୍ରମରେ ମଥାନତ କରିଥିଲି ସେଦିନ ତାଙ୍କ ନିକଟରେ ।

ନାଟକ ଲେଖିବାର କଳା, ସଂଳାପ ପ୍ରୟୋଗ, କାର୍ଯ୍ୟକାରିଣୀ ସମ୍ବନ୍ଧ, ଚରିତ୍ରର ଆବଶ୍ୟକତା, ମଞ୍ଚକଳା ପ୍ରତି ଦୃଷ୍ଟି, ସଂଯମତା, ଦୃଶ୍ୟସଜ୍ଜା, ଆଦ୍ୟ ଅନ୍ତ ସର୍ବୋପରି ଦ୍ୱନ୍ଦ୍ୱ ଓ ଆହୁରି ଅନେକ କିଛିକୁ ନ ବୁଝି ନାଟ୍ୟକାର୍‌ମାନେ ନାଟକ ଲେଖୁଛନ୍ତି । ଏହି ଅନଭିଜ୍ଞ ନାଟ୍ୟକାରମାନଙ୍କ ହାତରେ ଓଡ଼ିଶାର ମଞ୍ଚନାଟକ ଛଟପଟ ହେଉଥିବା ବେଳେ

ଯେଡ଼େ ପାଟିତୁଣ୍ଡ, ଲେଖାଲେଖି କଲେ ବି କେହି ଶୁଣିବାକୁ ନାହିଁ । ଦେଖାଯାଉ ଏଇ ମାଙ୍କଡ଼ମାନଙ୍କ ହାତରେ ଶାଳଗ୍ରାମ ଆଉ କେତେଦିନ ରହିବ ?

ଏହି ନାଟକଟିର କଥାବସ୍ତୁର ସାମାନ୍ୟ ଅବତାରଣା କରି ଏତିକି କହିପାରେ ଯେ ମଣିଷ ସବୁ ଭୁଲିଯାଇପାରେ; କିନ୍ତୁ ଭୁଲେନା ନିଜ ରକ୍ତକୁ । ଦିବଂଗତ ନିଜ ଲୋକଙ୍କର ସ୍ମୃତିକୁ ସାଇତି ରଖିବାକୁ କିଏ ସ୍ମୃତି ମନ୍ଦିର ଗଢୁଛି ତ କିଏ ଡାକ୍ତରଖାନା, କଲେଜ୍, ସ୍କୁଲ ଗଢୁଛି । ସୁରପ୍ରତାପ ଜଣେ ନିଆରା ମଣିଷ । ଦୁଇଟି ଦିଗକୁ ବିଚାର କରି ମା' ନାଁରେ କଲେଜ ଖୋଲିଲେ । ସ୍ମୃତିରକ୍ଷା ହେବ ଆଉ ନିଜ ଅଞ୍ଚଳର ଶିକ୍ଷାର ପ୍ରସାର ହେବ । କିନ୍ତୁ ସେ ଆଶା ତାଙ୍କର କେତେ ଦୂର ସଫଳ ହେଇଛି ? ପରିବର୍ତ୍ତିତ ପରିସ୍ଥିତିରେ ରାଜନୈତିକ ନାଗଫାଶର ଜାଲରୁ ସେ କ'ଣ ମୁକ୍ତ ? ସତ୍ୟ, ନ୍ୟାୟ, ଆଦର୍ଶ, ମାନବିକତା ଏ ଶବ୍ଦ ସବୁ ତାଙ୍କ ପାଇଁ କେତେ ଦୂର ଯଥାର୍ଥ ? ଏ ଘନଘୋଟିଆ ଅନ୍ଧାରରେ ଆଶାର ଜ୍ୟୋତି କ'ଣ ଦେଖାଯିବ ? ସୁରପ୍ରତାପଙ୍କ ପାଇଁ କ'ଣ ସେ ସକାଳ ଆସିବ; ନା ସେ ପରାଭବକୁ ଗ୍ରହଣ କରିନେଉଥିବେ ? ନାଟକର ଦର୍ଶକ ଓ ପାଠକମାନଙ୍କ ପାଖରେ ଏସବୁ ପ୍ରଶ୍ନର ସମାଧାନ ଛାଡ଼ି ଦେଉଛି ।

କଥାକାର ଶ୍ରୀ ଅଜିତ କୁମାର ତ୍ରିପାଠୀଙ୍କ ପ୍ରତିଟି ଗଳ୍ପର ସଚେତନ ଶାଣିତ ବ୍ୟଞ୍ଜନ ବ୍ୟଙ୍ଗାତ୍ମକ ସୃଜନ ବିଦ୍ରୂପ ଦିନେ ନା ଦିନେ ଏଇ ଅବକ୍ଷୟୀ କ୍ଷତାକ୍ତ ସାମାଜିକ ବିଘଟଣକୁ ନିଶ୍ଚୟ ବଦଳାଇବ । ରସୋତ୍ତୀର୍ଣ୍ଣ ହେଉ ତାଙ୍କର ସୃଷ୍ଟି । ଜଗତର ନାଥ ଜଗନ୍ନାଥ ତାଙ୍କ ସାହିତ୍ୟ ସୃଜନକୁ ଅଧିକ ଋଦ୍ଧିମନ୍ତ କରାନ୍ତୁ ।

ନାଟକଟିର ସଫଳ ରୂପାୟନରେ ନିର୍ଦ୍ଦେଶକ କଳାକାର ଅର୍ଥବିଭାଗ ସାଂସ୍କୃତିକ ପରିଷଦର କର୍ମକର୍ତ୍ତାଙ୍କୁ ଧନ୍ୟବାଦ ଜଣାଉଛି ।

ଆମ ସମୟର ଜଣେ ଶକ୍ତିଶାଳୀ ପ୍ରତିଭାଧର ନାଟ୍ୟକାର, ସାହିତ୍ୟ ସମାଲୋଚକ, ସୁବକ୍ତା ମୋର ସତୀର୍ଥ ଡଃ ବିଜୟ କୁମାର ଶତପଥୀ ଏ ନାଟକଟିର ଏକ ଅନ୍ତରଙ୍ଗ ଉଚ୍ଚାରଣ ଲେଖିଥିବାରୁ କୃତଜ୍ଞତାର ସ୍ୱର ଯାହା ଲେଖିଲେ ବି ଯଥେଷ୍ଟ ହେବନି - ମୁଁ ଋଣୀ ଆଜୀବନ ତାଙ୍କ ନିକଟରେ ।

ପ୍ରଥିତଯଶା ପ୍ରଚ୍ଛଦ ଶିଳ୍ପୀ ବନ୍ଧୁ ଶ୍ରୀ ବଳଦେବ ମହାରଥୀ ନାଟକଟିର ନାଟ୍ୟଚିନ୍ତାକୁ ରସୋତ୍ତୀର୍ଣ୍ଣ କରି ତୋଳି ଧରିଥିବାରୁ ତାଙ୍କୁ ମଧ୍ୟ ଅଭିନନ୍ଦନ ଜଣାଉଛି ।

ରଥଯାତ୍ରା ୨୦୦୨
ଭୁବନେଶ୍ୱର

ନାଟ୍ୟକାର

# ମଞ୍ଚକର୍ମ

ସ୍ୱରାଷ୍ଟ୍ର ବିଭାଗ ସାଂସ୍କୃତିକ ସଂସଦର ଷଷ୍ଠ ସଚିବାଳୟ ନାଟକ ପ୍ରତିଯୋଗିତାରେ ୨୫।୪।୨୦୦୨ ରବୀନ୍ଦ୍ରମଣ୍ଡପରେ ମଞ୍ଚସ୍ଥ ଓ ଶ୍ରେଷ୍ଠ ପାଣ୍ଡୁଲିପି ପୁରସ୍କାରପ୍ରାପ୍ତ ନାଟକ ।

| | | |
|---|---|---|
| ନାଟକର ସମୟସୀମା | - | ଏକଘଣ୍ଟା ପଇଁତିରିଶ ମିନିଟ୍ |
| ପ୍ରଯୋଜନା | - | ଅର୍ଥବିଭାଗ ସାଂସ୍କୃତିକ ସଂସଦ ସଚିବାଳୟ, ଭୁବନେଶ୍ୱର |
| ନିର୍ଦ୍ଦେଶନା | - | ପ୍ରମୋଦ କୁମାର ରାଉତ |
| ସଙ୍ଗୀତ ନିର୍ଦ୍ଦେଶନା ଓ ସ୍ୱର ସଂଯୋଜନା | - | ଟିଟନ |
| ମଞ୍ଚ | - | ଅସୀମ ବସୁ |

# ବିଭିନ୍ନ ଭୂମିକାରେ

| | | |
|---|---|---|
| ସୁରପ୍ରତାପ | - | ପ୍ରମୋଦ କୁମାର ରାଉତ |
| ନେତ୍ରାନନ୍ଦ | - | ରବୀନ୍ଦ୍ର କୁମାର ମଲ୍ଲିକ |
| ବୁଦ୍ଧିଆ | - | ଉମାଶଙ୍କର ମହାପାତ୍ର |
| ବ୍ରଜକିଶୋର | - | କୁଳମଣି ମିଶ୍ର |
| ଡଃ ଚୌଧୁରୀ | - | ହୃଷୀକେଶ ବଳିଆର ସିଂ |
| ଡଃ ଆନନ୍ଦ | - | କମଳଲୋଚନ ରାୟ |
| ଡ୍ରାଇଭର | - | ଅଶ୍ୱିନୀ କୁମାର ଦାଶ |
| ପ୍ରିନ୍ସିପାଲ | - | ରାଜକିଶୋର ପଣ୍ଡା |
| ଦଣ୍ଡପାଣି | - | ଆନନ୍ଦ ଚନ୍ଦ୍ର ବାରିକ |
| ରମାବୋଉ | - | କୁନି ମିଶ୍ର |

## ଶ୍ରୀ ଅଜିତ କୁମାର ତ୍ରିପାଠୀଙ୍କ ପ୍ରକାଶିତ ପୁସ୍ତକସୂଚୀ

*ଗଳ୍ପ*

ଅଦୃଶ୍ୟ ପୋଷାକ

ସକାଳ ନିଶ୍ଚୟ ଆସିବ

ଅକୁହା ଇତିହାସ

## ସରୋଜ ମିଶ୍ରଙ୍କ ପ୍ରକାଶିତ ପୁସ୍ତକସୂଚୀ

*ନାଟକ*

ତିନୋଟି ନାଟକ

ଆହତ ଆଲୋକ

ନିର୍ବାଚିତ ବେତାର ନାଟକ

ମୋକ୍ଷ

ଅବ୍ୟକ୍ତ ପ୍ରତୀକ୍ଷା

## ପ୍ରଥମ ଦୃଶ୍ୟ

[ ପୃଷ୍ଠମଞ୍ଚରୁ ଠାକୁର ପୂଜା ଘଣ୍ଟିଶବ୍ଦ ଧୀରେ ଧୀରେ କମିଆସୁଥିବ - "ଇତିଶ୍ରୀ ମହାଭାରତ ଶ୍ରୀମଦ୍‌ଭଗବଦ୍‌ଗୀତା ସୁପନିଷତସୁ ବ୍ରହ୍ମବିଦ୍ୟାୟାଂ ଯୋଗ ଶାସ୍ତ୍ରେ ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ସାଂଖ୍ୟଯୋଗ ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ ।"
ସୁରପ୍ରତାପ ପଢ଼ି ଚାଲିଥିବେ ଭିତରୁ - ମଞ୍ଚକୁ ଆଲୋକ ଆସିଛି । ରମାବୋଉ ଆସି ଠାକୁରଘରକୁ ଚାହିଁ 'ହୁଁ' ଟିଏ ମାରି ଫେରିଯାଇଛନ୍ତି । ସୁରପ୍ରତାପ ପାଣିଢାଳ ଓ ଘଣ୍ଟି ଧରି ମନ୍ତ୍ର ପଢ଼ି ପଢ଼ି ମଞ୍ଚକୁ ଆସି ବାହାରକୁ ଯାଇଛନ୍ତି ]

ରମାବୋଉ - (ପ୍ରବେଶ)
କ'ଣ ସଇଲା ତମର ମନ୍ତ୍ରପାଠ ? ଆଜି ସେତିକି ଥାଉ ।
କହୁଥିଲ ପରା ଭୋକ ହେଲାଣି-
ମୋର ଘଡ଼ିଏ ହେଲାଣି ରୋଷେଇ ସରିଲାଣି ।

ସୁରପ୍ରତାପ - (ଭିତରୁ)
ହଁ.... ଯାଉଛି,
ସୂର୍ଯ୍ୟଙ୍କୁ ପାଣିଟେକି ଦିଏ, ଖାଲି ନମସ୍କାର ବାକି-
ଜବାକୁସୁମ ସକାଶଂ କାଶ୍ୟପେୟ ମହାଦ୍ୟୁତିଂ ।
ଧାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରଂ ।

ରମାବୋଉ - ହଉ, ଶୀଘ୍ର ସାର ।
(ଟେବୁଲରୁ ଖବରକାଗଜ ଆଣି ଶୀର୍ଷ ସମ୍ବାଦ ପଢ଼ି ଖବରକାଗଜ ପୃଷ୍ଠା ଓଲଟେଇ ଚାଲିଥାନ୍ତି - ନଜର ପଡ଼ିଗଲା ଖବରଟିଏ ଉପରେ)

"କନକଦେବୀ କଲେଜରେ ଲଙ୍କାକାଣ୍ଡ" (ପଢ଼ିବା ପରେ)
ହେଇଟି ଆସ, ତମ କଲେଜ ଗଣ୍ଡଗୋଳ କଥା କାଗଜରେ ବାହାରିଛି ।

ସୁରପ୍ରତାପ - (ପ୍ରବେଶ)
ହୁଁ, କ'ଣ ହେଲା ....ମୁଁ ଦେଖିସାରିଛି ।
ତମେ ଏତେ ବ୍ୟସ୍ତ କାହିଁକି ହଉଛ ?
ଏବେ ତମକୁ ଗୀତାରୁ ଗୋଟି ଗୋଟି କରି କେତେ ଶ୍ଳୋକର ଅର୍ଥ ବୁଝାଉଥିଲି ।
ଭୁଲି ଯାଉଛ ଏତେ ଶୀଘ୍ର -
ଦୁଃଖେଷ୍ୱନଦୁବିଗ୍ନମନାଃ, ସୁଖେଷୁ ବିଗତସ୍ପୃହଃ
ବୀତରାଗ ଭୟକ୍ରୋଧଃ, ସ୍ଥିତ ଧୀର୍ମୁନିରୁଚ୍ୟତେ ।
ଦୁଃଖ ସୁଖ - ମାନ ଅପମାନ - ସବୁ ସମାନ
କର୍ତ୍ତବ୍ୟ କରୁଥିବା ସମୟରେ ବାଧା, ନିନ୍ଦା, ଅପମାନ, କର୍ମଫଳ ପ୍ରତିକୂଳ ହେଲେ କି ଭାଗ୍ୟର ବିପର୍ଯ୍ୟୟ ବେଳେ ଯା ମନରେ ଉଦ୍‌ବେଗ ଆସେନି, ସେ ଯେ ସ୍ଥିତପ୍ରଜ୍ଞ ।

ରମାବୋଉ - ରଖ ତମର ଗୀତାର ଉପଦେଶ ବାଣୀ - ମଣିଷ ଦେହଧରି ମୁଁ ସହିପାରୁନି ଆଉ; ଯାହା ତମକୁ ଭଲ ଲାଗୁଛି ତା' କର ।

ସୁରପ୍ରତାପ - ମତେ କିଛି ଭଲ ଲାଗୁନି ।
(ଉଠି ପଡୁଥିଲେ)
ଶୁଣ, ଆହେ ଶୁଣ !
ରମାବୋଉ ରାଗ ନାଇଁ । ତମେ ରାଗିଲେ ଏ ସଂସାର ଚଳିବ ତ ?

ରମାବୋଉ - ନ ଚଳି ନ ଚଳି ଆସି ତିରିଶ ବର୍ଷ କଟିଲାଣି । ତାଳଗଛର ତଳ ବରଡ଼ା ପରା, କେତେବେଳେ ଖସିପଡ଼ିବ ଠିକ୍ ନାହିଁ ।

ସୁରପ୍ରତାପ - ସେମିତି କୁହନି ରମାବୋଉ !
ମୁଁ ତ ମାନୁଛି । ଏଥର ଭୁଲ୍ ହୋଇଗଲା ।

ରମାବୋଉ - ଖାଲି ଭୁଲ ? ମସ୍ତବଡ଼ ଭୁଲ । ମୂଳରୁ ମୁଁ ମନାକରୁଛି, ହେଲେ, ମୋ କଥା କ'ଣ ବାପ ପୁଅ ଶୁଣିଲ ? ଦି' ଜଣଙ୍କର ଗୋଟାଏ ଜିଦ୍ ।

ସୁରପ୍ରତାପ - ମାନୁଛି, ଭୁଲ ହୋଇଗଲା - ବାରମ୍ବାର ସେଇ କଥାକୁ ମାଜିଲେ ଅଶାନ୍ତି ସିନା ବଢ଼ିବ ।

(ରମାବୋଉଙ୍କ ହାତ ଧରିଛନ୍ତି)

ରମାବୋଉ - ବଢୁ ... (ରାଗରେ ହାତ ଛାଟି)

ସୁରପ୍ରତାପ - ସତରେ ରମାବୋଉ ! (ହସ)
ତମେ ଏମିତି ରାଗିଲେ ନା ....
ଭାରି ... ଭାରି ସୁନ୍ଦର ଦିଶ -

ରମାବୋଉ - ଛାଡ଼ ! ତମର ଏ ଅଲଣା ସୁହାଗ କଥା -
ଆଗ ତମେ ମୋ ସାମ୍ନାରେ ଇସ୍ତଫା ପତ୍ର ଲେଖ, ତା' ପରେ ଯାଇ ତମ ସାଙ୍ଗେ କଥାବାର୍ତ୍ତା, ନ ହେଲେ, ସତ କହୁଛି -
ମୁଁ ଆଜି ପାଣି ଛୁଇଁବିନି ।
ପୁଅଟା ମୋର କେତେ କଷ୍ଟରେ ବିଦେଶରେ ରହି ଡାକ୍ତରୀ ବେଉସାରୁ ପଇସା ସଞ୍ଚି ଜେଜେମା' ନାଁରେ କଲେଜ ଖୋଲିଲା -
କ'ଣ ନା ଯୁଗ ଯୁଗ ଧରି ଜେଜେମା' ଅମର ରହିବେ -
ଏମିତି ଯଦି ତମମାନଙ୍କ ମନରେ ଥିଲା -
ସ୍ମୃତିପୀଠଟେ କରି ବର୍ଷରେ ଦିନେ ଅଧେ ଦୁଃଖୀରଙ୍କୀକି ଖିଆପିଆ, ଦାନଧର୍ମ କରିଦେଇଥିଲେ କ'ଣ ହୋଇ ନ ଥାଆନ୍ତା, ଅଞ୍ଚଳ ଯାକର ପିଲାଙ୍କୁ ଶିକ୍ଷିତ, ମଣିଷ କରିବା ନିଶାରେ ତମେ ହିଁ ପ୍ରଥମେ କହିଲ - ମା'ଙ୍କ ନାଁରେ କଲେଜ ହେବ ।
ରାସ୍ତାକଡ଼ ଜମିଗୁଡ଼ାକୁ ମାଗଣାରେ କଲେଜକୁ ଦାନ ଦେଇ ଦେଲ ।
ତା' ଛଡ଼ା କେତେ ଟଙ୍କା ପଇସା ।
ଛଅ ବର୍ଷ ହେଲାଣି କଲେଜ ଚାଲିଲାଣି ।

ତମେ ତ ନିଜେ ସଭାପତି ।
କହିଲ ! ସତରେ କ'ଣ ପିଲାଏ ପାଠ ଶାଠ ପଢ଼ି
ମଣିଷ ପରି ମଣିଷ ହୋଇଛନ୍ତି -
ମୋ ଜାଣିବାରେ ମଣିଷ ରୂପରେ ଗୋଟେ ଗୋଟେ ଅସୁର ହେଇଛନ୍ତି ।
ଦେଖୁଛ ତ ସେମାନଙ୍କ ରୀତିନୀତିକୁ ।
ସେମାନଙ୍କ କାରସାଦିରେ ତମେ ପଶିପାରୁଛ ?
କିଏ ତମକୁ ପଚାରୁଛି ?

ସୁରପ୍ରତାପ - ନ ପଚାରନ୍ତୁ । କାହା ପଚାରିବାକୁ କିଏ କ'ଣ ଅନାଇବସିଛି ?
ଦିନ ଥିଲା ଆମେ ସବୁ ଶହେ ଦୁଇଶହ ମାଇଲ ଯାଇ
ସହରରେ ରହି ପାଠ ପଢୁଥିଲୁ ।

ରମାବୋଉ - ଛତୁ ଫୁଟିଲା ପରି କଲେଜ ହେଇଗଲେ ସବୁ ଶିକ୍ଷିତ ହୋଇଯିବେ, ମଣିଷ ହୋଇଯିବେ, ଦେଶ ସୁନା ହୋଇଯିବ .... ନୁହେଁ ?
ତମେ ତ ଜଣେ ମୁରବି ଶ୍ରେଣୀୟ ଲୋକ ।
ମ୍ୟାନେଜିଂ କମିଟି ମିଟିଂରେ କାଲି ଦଳଟାଯାକର ବଦମାସ୍ ଲୋକ ତମକୁ ଏମିତି ଅପମାନ କଲେ କାହିଁକି ?
କୋଉ କଥା ସେମାନେ ତମର ରଖିଲେ ?
ଓଲଟି ତମ ନାଁରେ ଏଇ ବାଜେ କଥାଗୁଡ଼ା ଖବରକାଗଜରେ ଲେଖିଛନ୍ତି ।
ବୁଝିଲ ? ତମେ ଏଣିକି ଅଲୋଡ଼ା ହେଇଗଲ !

ସୁରପ୍ରତାପ - (ଦୀର୍ଘଶ୍ୱାସ)
କେବଳ ମୋ ଅବସ୍ଥା କାହିଁକି ?
ମୋ ବୟସର ପ୍ରାୟ ସମସ୍ତେ ଅଲୋଡ଼ା ହେଇଗଲେଣି ।
ବୟସ ଯେତିକି ବଢ଼ି ବଢ଼ି ଚାଲେ, ମଣିଷ ସେତିକି ଅଲୋଡ଼ା ହୋଇଯାଏ ।

ରମାବୋଉ - ତେବେ ....

ସୁରପ୍ରତାପ - ଦୀର୍ଘ ପାଞ୍ଚଶହ ବର୍ଷର ଭାରତର ଇତିହାସ ଯେତିକି
ବଦଳିବା ସମ୍ଭବ ହୋଇ ନ ଥିଲା -
ମୁଁ ଭାବୁଛି ଏଇ ପଚାଶ ବାଉନ ବର୍ଷ ଭିତରେ
ଅନେକ କିଛି ବଦଳି ଯାଇଛି -

ରମାବୋଉ - ଅନେକ କିଛି....
(ଦୀର୍ଘଶ୍ୱାସ ହତାଶାବ୍ୟଞ୍ଜକ)
ସ୍ୱାଧୀନତା ପରଠୁଁ....

ସୁରପ୍ରତାପ - ହଁ; ଅର୍ଥ ହିଁ ସର୍ବସ୍ୱ ।

ରମାବୋଉ - ଅର୍ଥ ବିନା ମଣିଷ ଅସହାୟ ।

ସୁରପ୍ରତାପ - କିନ୍ତୁ ଏଇ ନିରନ୍ତର ଅର୍ଥଲିପ୍‌ସୁ ମଣିଷ ନିକଟରେ ସ୍ନେହ,
ମମତା ଆଉ ସରାଗର ନିବୁଜ ଦରଜାର ଚାବିକାଠିଟା
ତା' ହାତ ପାଆନ୍ତାରୁ ସବୁଦିନ ପାଇଁ ହଜିଯାଇଥାଏ -
ଭାବିଲାବେଳକୁ ନେଡ଼ି ଗୁଡ଼ କହୁଣିରେ ପହଞ୍ଚିଥାଏ ....
ବନ୍ଦ ଘରର ଚାବିକାଠିଟା ସବୁଦିନ ଲାଗି ହଜିଯାଇଥାଏ ।
ଖୋଜିଲେ ଆଉ ମିଳେନା ... ରମାବୋଉ ।

ରମାବୋଉ - ଯେମିତି ହଜିଯାଇଛି ନେତରା ନାୟକ ହାତରୁ ଚାବିକାଠିଟା...

ସୁରପ୍ରତାପ - ଆମରି କଲେଜରେ ପଢ଼ି ସାତ ପଛରେ,
କଲେଜ କମିଟିର ସଭ୍ୟ ହେଇଛି ନେତରା ନାୟକ,
ଯୋଗ୍ୟତା କହିଲେ କେବଳ ସିଏ ପଞ୍ଚାୟତର ସରପଞ୍ଚ -
ଭାବି ନ ଥିଲି ସିଏ ଏମିତି ମୋ କଥାକୁ ପ୍ରତିବାଦ କରିବ ।
ସେଥିରେ ପୁଣି ତାକୁ ସମସ୍ତଙ୍କର ସପୋର୍ଟ୍ -

ରମାବୋଉ - କେମିତି କରିବେନି ।
କଲେଜରେ ସପ୍ତାହରେ ଥରେ ଦି'ଥର ଭୋଜିଭାତ,
ଦରକାର ପଡ଼ିଲେ କେତେବେଳେ କେମିତି ହାତଗୁଞ୍ଜା ପିଆପିଇ,
ବୋତଲ ଗଡ଼ାଗଡ଼ି - ନେତରାଭାଇ, ନେତରାଭାଇ କହି କାହାରି

ଏଠି ଭାତ ହଜମ ହେଉନି ପରା ...
ସବୁ ଖବର ମୋ କାନରେ ବାଜିଛି;
ସେଇଥିପାଇଁ କେବେଠୁଁ କହୁଛି ଯାହା ହେଲାଣି - ଆଉ ମାତନି;
ଓହରି ଆସ ସେଠୁ ।

ସୁରପ୍ରତାପ - କିଏ ଜାଣିଥିଲା ଆମ ଲୋକମାନେ ଏତେ ଚଞ୍ଚଳ
ନିଜର ପରମ୍ପରା ଐତିହ୍ୟ ଆଉ ସଂସ୍କୃତିକୁ ଛାଡ଼ି ଅନ୍ଧପରି
ବର୍ତ୍ତମାନ ସର୍ବସ୍ୱ ଭାବି
ମାନବୀୟ ମୂଲ୍ୟବୋଧକୁ ହରେଇ ବସିବେ -
ସତରେ ରମାବୋଉ ! ମଣିଷ ଜୀବନରେ ଅନେକ ସ୍ୱାଭିମାନକୁ
ଭୁଲିଯାଇପାରେ କିନ୍ତୁ ଗୋଟାଏ ଅପମାନକୁ ଜୀବନ ସାରା ମନେ
ରଖିଥାଏ ।
ମୁଁ ଏ ଘୋଡ଼ା ଦୌଡ଼ାଦୌଡ଼ିରେ ଆଜି କ୍ଳାନ୍ତ ।
(ନୈରାଶ୍ୟ) ଆଉ ପାରୁନି ।

ରମାବୋଉ - ତମେ ଏମିତି ଭାଙ୍ଗିପଡ଼ନା -
ଦରକାର ନାଇଁ ସେ ଝିନ୍‌ଝଟରେ ଆମର ପଶିବା -
ତମେ ସଭାପତି ପଦରୁ ଇସ୍ତଫା ଦେଇଦିଅ -
ମୋର କାହିଁ ମନେହେଉଛି - ଦିନ ଆସିବ - (ଭ୍ରୂକୁଞ୍ଚନ)
ହୁଏତ ଆମେ ନ ଥିବା - ଯେପରି ଭାବରେ ସରକାର
ଶିକ୍ଷାନୁଷ୍ଠାନ ଖୋଲିବାପାଇଁ ଅନୁମତି ଦେଇ ଚାଲିଛନ୍ତି -
ଏ ଛତୁ ଫୁଟିବା ଶିକ୍ଷାନୁଷ୍ଠାନ ସବୁ ବନ୍ଦ ହୋଇଯିବ -
ତା ଜାଗାରେ ଗଢ଼ିଉଠିବ ଜେଲଖାନା ସବୁ -
ଆଉ ସେଠି କିଏ ରହିବେ କହିଲ !
ଏଇ ଅମଣିଷ - ମାଙ୍କଡ଼ପଲ - ଖାଲି ଅପରାଧୀ - ଅସୁର ।

ସୁରପ୍ରତାପ - ଠିକ୍ କହିଛ ରମାବୋଉ ! ଠିକ୍ କହିଛ ।
ଏ ଦେଶରେ କିଛି ଆଉ ହବନି । ମଣିଷ ବଞ୍ଚିବା କଷ୍ଟ ।
ଦୁର୍ନୀତିର ଚେର ଉପରୁ ତଳ ଯାଏଁ ମାଡ଼ିଗଲାଣି ସାଂଘାତିକ

ଆକାରରେ, ତାକୁ ଯିଏ ଉପାଡ଼ିବାକୁ ଚାହିଁବ ନିଜେ ମରିବ ।
ଆତ୍ମସାତ୍ ଯେଉଁଠି ଆଇନସମ୍ମତ, ଅନୀତି ଯୋଉଠି ନୀତି ସେ ଦେଶରେ ଆଦର୍ଶ କଥା ଉଚ୍ଚାରଣ କରିବା ଲଙ୍କାରେ ହରି ଶବ୍ଦପରି ବୋକାମି ଆଉ ବଦ୍ଧ ପାଗଳାମି -
ମୁଁ ଆଶ୍ଚର୍ଯ୍ୟ ।
ତମେ ଯେ ରମାବୋଉ !
ମୋ ପୂର୍ବରୁ ଏତିକି ବୁଝିସାରିଛ -

ରମାବୋଉ - ବଉଁଶ ବୁଡ଼ିଲାବେଳକୁ ଏ ଦେଶରେ ଘୋଡ଼ାମୁହାଁ ଛୁଆ ଜନ୍ମ ପରା, ନଷ୍ଟସ୍ୟ କାନ୍ୟା ଗତି, ବୁଡ଼ିଗଲା ଗୋଡ଼ ତଳକୁ ତଳକୁ ତମେ ବୁଝ କି ନ ବୁଝ ମୋ ଦେହ ଛୁଇଁ ତମେ ଆଗ କହ - ଇସ୍ତଫା ଦେବ ନା ନାହିଁ ।

ସୁରପ୍ରତାପ - ଦେବି .... ଦେବି .... ଦେବି ...

ରମାବୋଉ - ଠାକୁର ଲୁଗା ବଦଳି ଦିଅ - ଆସ ଖାଇବ ....

ସୁରପ୍ରତାପ - ତମେ ବଢ଼ାବଢ଼ି କର । ବଡ଼ିଚୂରା ହେଇଛି ନା ନାଇଁ କହିଲ ? ଆଉ ବାଡ଼ି ଲଙ୍କା ସକାଳେ ତୋଳିଥିଲଟି ?

ରମାବୋଉ - ହଁ ...

[ଅନ୍ଧାର]

## ଦ୍ୱିତୀୟ ଦୃଶ୍ୟ

[ମଞ୍ଚର ଉପରଭାଗର ଡାହାଣପଟ - ଡ. ଦାସଙ୍କ ଅଫିସଗୃହ]

ଡ. ଦାସ - ଦଣ୍ଡପାଣି ! ହେ ଦଣ୍ଡପାଣି !
(ବଡ଼ ଜୋରରେ) ବଡ଼ବାବୁ ! ବଡ଼ବାବୁ !

ଦଣ୍ଡପାଣି - (ହଡ଼ବଡ଼େଇଯାଇ) ଆଜ୍ଞା ମତେ ହେଜ କଲେ ?

ଡ. ଦାସ - କୁଆଡ଼େ ଯାଇଥିଲେ ? କ'ଣ କରୁଥିଲେ ? କେତେ ଡାକିଲିଣି ?
ପିଅନଟା କୁଆଡ଼େ ଗଲା ? ହେଁ ...

ଦଣ୍ଡପାଣି - ବୋଇଲେ ନରିଆ ।
ସମାନେ ପାଣିଲଗେଇବା ପାଇଟିକୁ ଥିବ ବାଆବୁ !

ଡ. ଦାସ - ଓଃ ... ଓଃ ...
ତମେ ମୋ ମୁଣ୍ଡ ଖରାପ କରିଦେବ
ଏତେ କରି କହିଲି ଟିକେ କେୟାରଫୁଲ୍ ହୁଅ ...

ଦଣ୍ଡପାଣି - ସେ ପାଇଟିରେ ଆମେ ପରା ମନପ୍ରାଣ ଢାଳିଦବାର ବାଆବୁ !
ଆମେ ସମାନେ କେୟାରଫୁଲ ଅଛୁ ।

ଡ. ଦାସ - ମୁହଁରେ ସିନା କହୁଛୁ କେୟାରଫୁଲ
କିନ୍ତୁ କାମରେ ...

ଦଣ୍ଡପାଣି - ସେମିତି ନାହିଁ କହିବାର ବାଆବୁ !
ଆମେ କିସ ଏ ପାଇଟି ଏବେ କରୁଛୁ କି ବାଆବୁ !
ଆମର ବୋପା, ତା ବୋପା, ତା ବୋପାର ବୋପା କାଳୁଂଗୁମାସ୍ତା
ପାଇଟି କରି ଆସୁଛୁନା ।
ଆମେ ସମାନେ ସମସ୍ତେ କେୟାରଫୁଲ ।

ଡ. ଦାସ. - (ବିସ୍ଫୋଟିତ)
ଚୋପା କେୟାରଫୁଲ୍ ।
କେୟାର କମ୍ - ପକେଟ୍‌ଫୁଲ୍ ।

ଦଣ୍ଡପାଣି - (କାନ ପାଖକୁ ହାତ ଯିବ)
ରାଗ ନାହିଁ ବାଆବୁ !
ଆମେ କିଅଣ ବସିଥିଲା ଲୋକକି ।
ଆମେ ସେ ସମିତି ମେଏମ୍ବର ସାଙ୍ଗେ ମିଶିବା ପାଇଁ ଯାଇଥିଲା ନା....

ଡ. ଦାସ - ସମିତି ମେମ୍ବର ?

ଦଣ୍ଡପାଣି - ବୁଝିପାରିଲ ନାଇଁଟି - ନାଇଁ;
ପାରିବ ନାଇଁ -
ବୁଝିଲ ବାଆବୁ -
ସମିତି ମେଏମ୍ବର କହିଲା ନୂଆ ନୂଆ ସ୍କୁଲ କଲେଜ ଖୋଲାହେବ ।

ଡ. ଦାସ - ହୁଁ ....
ସରକାର ଆଉ ନୂଆ ଖୋଲିର୍ବେ ।
ନିଜ କର୍ମଚାରୀଙ୍କୁ ଦରମା ଦେଇପାରୁ ନାହାନ୍ତି ଠିକ୍ ସମୟରେ ।
ପୁରୁଣା ହାଲ୍ ସବୁ ବାର ବାଜିଲାଣି -
କହିଲା ନୂଆ ! ମେମ୍ବର ଗଞ୍ଜେଇ ଖାଇଥିବ ।
(ଚାହିଁଛନ୍ତି ଦଣ୍ଡପାଣିକୁ)

ଦଣ୍ଡପାଣି - ଚାହିଁଚ କିଅଣବା -
ସରକାର ନୂଆ କଲେଜ ଖୋଲିବାର ....
ସମିତି ମେଏମ୍ବର ମତେ ମିଛ କହିବ ନାହିଁ ।
ଏତେ ପାଇଟି କରିବ ଆମ ସାଙ୍ଗେ ?
ନାଇଁ ବାଆବୁ !
ସେ ଆମକୁ କେବେ ମିଛ କହିବ ନାହିଁ ।

ଡ. ଦାସ - ହଁ ହେଇଥିବ - ଭୋଟ ପାଇଁ ଏ ନାଟ ଚାଲିଥିବ

ଦଣ୍ଡପାଣି - ହାଁ .... କଥାଟାକୁ ଏବେ ସମାନେ ଧଇଲା ! ଖାଲି କଲେଜ ନାଇଁ -

ଇଏ ମାଈ ପିଲା କଲେଜ ଖୋଲିବା ପାଇଁ କିସ, ସେଇଟା -

ଏମେଲେ ପରା ସମାନେ କଥା ଦେଇଛନ୍ତି -

ଡ. ଦାସ - ଭଲ ହେଲା -

ଦଣ୍ଡପାଣି - କିସ ଭଲ ହେଲା ବାଆବୁ !

ପଞ୍ଚୁଆତିରେ ଗୁଟେ କଲେଜ ଅଛି ପରା

ମାଈପିଲା ଅଣ୍ଡିରା ପିଲା ମିଶିକରି ଯୋଡ଼ି ଯାଉଁଳି ହେଇ ପାଠ ପଢ଼ିବାର । ଏ କଥା ପୁଣି ଆମ ପାପୁଲାର ଏମେଲେ କହୁଚି କି ?

ଡ. ଦାସ - ଅତି ଉତ୍ତମ କଥା ।

ଦଣ୍ଡପାଣି - ତମେ ବାଆବୁ !

ପାଠ ଶାଠ ପଢ଼ି ଏତେ ବଡ଼ ହାକିମ ହେଇକରି ଗାଁ ମାଈପିଲାଙ୍କ ଲେଖା ବୋଲୁଚ ।

ସବୁ ହାରକିନି ବାଆବୁ !

ଏ ଏମେଲେ ହାରକିନ୍ ଦେଖାଇବାର ।

ଡ. ଦାସ - ହାରକିନି - ତମେ କିମିତି ଜାଣିଲ ବିଧାୟକ ହାରକିନ୍ ଦେଖଉଛି ?

ଦଣ୍ଡପାଣି - ଏଇ ଗଲାସନ ସମାନେ ମୁଖ୍ୟମନ୍ତ୍ରୀ ଆସିବାର -

ସଭା କରିବାର -

ପଥର ପୋତିବାର ।

ଜେନା ସାହି ପଡ଼ିଆରେ କଲେଜ ହେବାର -

କିଅଣ ହେଲା ?

ଏତେ ଗହଳି, ଏତେ ଗୋଳକୁ ଶେଷକୁ ଖମ୍ଭଆଲୁ ।

ଡ. ଦାସ - ସେ କଥା ଅଲଗା - ଏ ସରକାର ନୂଆ -

ହଉ ଛାଡ଼ ସେ କଥା -

ତମେ କନ୍‌ଫରେନ୍‌ସ ହଲ୍ ବାଟେ ଆସିଛ ନା ନାହିଁ -

ନା ସେ ବାଟେ କାହିଁକି ଆସିବ ?

ସିଧା ଏଠିକି ମାଡ଼ି ଆସିଲ (ବିରକ୍ତ)
ୟୁସ୍‌ଲେସ୍ କିଛି କରିବନି - ଖାଲି ଘିରି ଘିରି ବୁଲିବ -
ଦଣ୍ଡପାଣି - ଏ ଦଣ୍ଡପାଣି କି ତମେ କିସ କରି ପାଇଲ କି ବାଆବୁ !
ବୁଝିଲ ନା ବାଆବୁ ସବୁ ପାଇଟିକି ଫିଟ୍ !
ଡ. ଦାସ - ଠିକ୍ କହୁଚ ? ଯଦି କିଛି ଗୋଳମାଳ ନାହିଁ, ଯଦି ହୁଏ ତେବେ ତମେ ଦାୟୀ ରହିବ
ମୁଁ ତ ଯିବି
ତମ ଚାକିରି ବି ....
ଦଣ୍ଡପାଣି - ବାଆବୁ !
ଡ. ଦାସ - କ'ଣ ବାବୁ ! ମିଟିଂର କିଛି ରହସ୍ୟ ପାଇଲ !
ଦଣ୍ଡପାଣି - ତମେ କିଅଣ ପାଇଁ ଏତେ ତନ୍ଦ୍ରା ହଉଚ ବାଆବୁ !
ସବୁ ପାଇଟି ଫିଟ୍ -
ଆମର କାମ ହେଲା ସମାନ ସାମ୍ବାଦିକ ଗୁରାଙ୍କୁ ମିଟିଂର ପାଖ ମଡ଼େଇ ନ ଦେବାର ।
ଡ. ଦାସ - ସାବାସ୍ - ସେଇ କାମ ଜଗ, ନ ହେଲେ ସବୁ ଫସର ଫାଟିଯିବ ।
ଦଣ୍ଡପାଣି - ସମାନେ ଆମକୁ ଅବିଶ୍ୱାସ କିହେ ? ସମାନେ ସେଇଠୁ ଆଇଲି - ତେମେ ଆପଣେ କିଅଣ ବୁଝିଲ ? କେହି ସାମ୍ବାଦିକ ଆସିଛନ୍ତି କି ?
ଡ. ଦାସ - ନା, କେହି ନାହିଁ -
ମୁଁ ସିନା ତମ ଉପରେ ବିରକ୍ତ ହେଇଯାଏ;
କିନ୍ତୁ ମୋର ତମ ଉପରେ ଆସ୍ଥା ଅଛି, ଭରସା ବି ....
ଦଣ୍ଡପାଣି - ହାଆଁ ! ରହିବ ... ରହିବ ବାଆବୁ !
ଆମେ ଦକ୍ଷିଣିଆ ଲୋକ କଥାରେ ସମାନେ ବାପର ନୁହଁଟି ...
ଡ. ଦାସ - ଗୁଡ୍ ....
ଆଉ ସଭାରେ କ'ଣ ଚାଲିଛି ?
ଦଣ୍ଡପାଣି - ଆବ୍‌ବା ... ଆବ୍‌ବା .... କିଅଣ ବୋଇଲ ।
ଆମକୁ ସେ ଭିସିଟା ଯେମିତି ଆଖି ତରାଟି ଅନେଇଲା ଆମର ତ

ସମାନେ ନୁଗା ଫିଟ୍ଗିଲା -
ଆଉ ମନ୍ତ୍ରୀଙ୍କ ଭାଷଣ କିଏ ଶୁଣିଲା ?
ଖାଲି ଏତିକି ଶୁଣିଲା -

ଡ. ଦାସ - କ'ଣ ଶୁଣିଲ ?

ଦଣ୍ଡପାଣି - (ଚାପା କଣ୍ଠ)
ମନ୍ତ୍ରୀ ବୋଲିବାର ଏଇଟା କିସ ଶିକ୍ଷା ସଉଚ,
ନାଇଁ ନାଇଁ ସଙ୍କୋଚ ହେ ଶିକ୍ଷା ସଂସ୍କାର ନୀତି -
ଶିକ୍ଷା ସଙ୍କୋଚ ହଉ ଶିକ୍ଷା ସଉଚ ହେଉ -
ସଂସ୍କାର ହେଉ କୁସଂସ୍କାର ହେଉ ।
ଆମର କିସ ?

ଡ. ଦାସ - ଆଉ କିଛି ?

ଦଣ୍ଡପାଣି - ତନ୍ଦରା ନାଇଁ ହବାର ବାଆବୁ ! ଆମେ ବି ରାମୁଲ ଦଣ୍ଡପାଣି ।
ଆମେ ଆମର ସାନ ଟୋକାଟାକୁ ଭିତରେ ଛାଡ଼ିଦବାର -
ସବୁ ଭେଦ ମିଳିଯିବାର ବାଆବୁ !
ତନ୍ଦରା ନାଇଁ ହବାର ।

ଡ. ଦାସ - ସାବାସ୍ ସାବାସ୍ ଦଣ୍ଡପାଣି !

ଦଣ୍ଡପାଣି - ବାଆବୁ ! କହିଲ ଦେଖିବା ଏ ରାମୁଲ୍ ଦଣ୍ଡପାଣି ତମ ପାଖେ
ଏତେ ବର୍ଷ ପାଇଟି କରିଛି । କୋଉଠି ଫେଲ୍ ମାରିଛି କିହେ ?

ଡ. ଦାସ - ଗୁଡ୍ .... ଭେରିଗୁଡ୍ ।

[ଅନ୍ଧାର]

## ତୃତୀୟ ଦୃଶ୍ୟ

[ ତଳ ମଞ୍ଚର ବାମ ଭାଗ - ନେତ୍ରାନନ୍ଦ ନାୟକ ଚିନ୍ତିତ— ତାଙ୍କର ଗୋଟିଏ ଆଖି ଅନ୍ଧ - ବିଚଳିତ ହେଇ ଏପଟ ସେପଟ — ବୁଦ୍ଧିଆ ତାଙ୍କ ପଛେ ପଛେ ]

ନେତ୍ରାନନ୍ଦ - ନେତ୍ରାନନ୍ଦ ନାୟକକୁ ରହସ୍ୟ ଭେଦ କରିବାକୁ ଆଉ ସମୟ ଲାଗିବନି ।

ବୁଦ୍ଧିଆ - ମାନେ ?

ନେତ୍ରାନନ୍ଦ - ଭିତରକୁ ଗଲେ ସିନା ବୁଝିବୁ ?

ବୁଦ୍ଧିଆ - (ଆଶ୍ଚର୍ଯ୍ୟ ହେଇ ଆଁ କରି ନେତ୍ରାନନ୍ଦଙ୍କୁ ଦେଖୁଛି)

ନେତ୍ରାନନ୍ଦ - ଖାଲି ଆଁ ଟା କରି କଟାଶ ପରି ଅନେଇଲେ କ'ଣ ହେବ ବୁଦ୍ଧିଆ ! ବୁଝିବାକୁ ଟିକେ ମୁଣ୍ଡ ଖଟଉନୁ ...

ବୁଦ୍ଧିଆ - (ମୁଣ୍ଡ ଧରି) ଖଟଉଛି ଯେ ହେଲେ କିଛି ଧରୁନି ...

ନେତ୍ରାନନ୍ଦ - ଧେତ୍‌ତେରି ....

ବୁଦ୍ଧିଆ - ଆରମ୍ଭରୁ ତ ଅକସି ଯିବ - ମୁଁ ବୁଝିବି କେମିତି ?

ନେତ୍ରାନନ୍ଦ - ଆମ ପିଲାଏ ଏତେ ପଢ଼ିଲେ ।
କ'ଣ ବିଲକୁ ହଳନଙ୍ଗଳ ବୋହିଥାଆନ୍ତେ ନା ଆମ ପରି ଚାଷୀ ମୂଲିଆ ହେଇଥାଆନ୍ତେ ।
କହିଲୁ ବୁଦ୍ଧିଆ !
ଆରେ ଖଣ୍ଡମଣ୍ଡଳରେ କଲେଜ କହିଲେ ସାତ ସପନ ଥିଲା; ଏବେ ତ ହାଇସ୍କୁଲ ଗଣ୍ଡା ଗଣ୍ଡା, ଅନ୍ତତଃ କଲେଜ ପଞ୍ଚାୟତରେ ଗୋଟେ ନ ହେଲେ ଦି'ଟା ଆମରି ଲୋକ ତ ସବୁ ମାଷ୍ଟ୍ର ଆଉ ଅଧ୍ୟାପକ ।
ବାବନା ଭୂତ ପରି ବାର ଦୁଆର ବୁଲୁ ନାହାନ୍ତି ତ ?
କୂଳରେ ଲାଗି ଯାଇଛନ୍ତି, ନା କ'ଣ କହୁଛୁ ?

ବୁଦ୍ଧିଆ - ହଁ, ତ
ନେତ୍ରାନନ୍ଦ - କ'ଣ ହଁ ତ ! (ରହି)
ଶିକ୍ଷାର ପ୍ରସାରଣ ଲାଗି ଆମେ କାମ କରୁଛେ ନା ନାହିଁ ?
ବୁଦ୍ଧିଆ - କରୁଛେ -
ହେଲେ କାଲି ସଭାରେ ଯେମିତି ଗଣ୍ଡଗୋଳଟା ମୁଁ କରିଦେଲି -
କଥାଟା ହେଲେ ଭଲ ଦିଶିଲାନି ।
ଯେତେହେଲେ ବି ସୁରପ୍ରତାପ ଏ ଅଞ୍ଚଳର ଗୁରୁଜନ -
ନେତ୍ରାନନ୍ଦ - କ'ଣ ହୋଇଗଲା ସେଥୁ ? ତୁ'ତ ନିହାତି ବୋକାଟାଏ .... ;
ବୁଦ୍ଧିଆ - ଜାଣେ ତମେ ଗାଳି ଫଜିତ୍ କରିବ ।
କିନ୍ତୁ କଥାଟା ମୋ ଘରଣୀ କାନକୁ ବିଜୁଳି ବେଗରେ ଚାଲିଯାଇଛି -
ସେ ବି ଭଲମନ୍ଦ ଦି ପଦ ମତେ ଶୁଣେଇଦେଇଛି -
ଉସୁକେଇତ ଦେଲ -
ବୁଢ଼ାକୁ ସଭାରୁ ଉଠେଇବା ପର୍ଯ୍ୟନ୍ତ ମୁଁ ପାଟି କଲି -
ଯାହା କୁହ - କାଲି କଥା ଭାବିଲାବେଳକୁ
ମୋର ଏ ଛୋଟ ମୁଣ୍ଡକୁ ବିରୁଡ଼ି ମାରିଲା ଭଳି
ଚାଉଁଚାଉଁ ଲାଗୁଛି - ସରପଞ୍ଚେ !
ନେତ୍ରାନନ୍ଦ - ଓଲୁ କୋଉଠିକାର ! ମାଇପ ବୋଲାଟାଏ ଦେଖୁଛି ।
ବୁଦ୍ଧି ତୋର ସବୁବେଳେ ବିଭ୍ରମ; ସେଇଥିପାଇଁ ତୋ ବାପା ମା'
ନାଁ ଦେଇଛନ୍ତି ବୁଦ୍ଧିଆ
ବୁଝିଲୁ ! ନିପଟ ବୋକାଟାଏ ....
ବୁଦ୍ଧିଆ - ହେଇଟି ସରପଞ୍ଚେ ! ସେମିତି କୁହନି -
ତମ ନାଁ ତ ନେତ୍ରାନନ୍ଦ
ଏ ବାଁ ପଟ ଆଖିଟା ତମର ଜନ୍ମରୁ କାହିଁକି ଖୋଲୁନି କହିଲ !
ନେତ୍ରାନନ୍ଦ - (ନାଗ ସାପ ପରି ଫଁ)
ପନ୍ଦର ବର୍ଷ ହେଲାଣି,
ମୋ ପାଖେ ପାଖେ ରହି କାମ କରୁଛୁ ।
ଦେଖୁଛି ତୋର ସାହସ ତ କମ୍ ନୁହେଁ ।

ବୁଦ୍ଧିଆ - (ଡେଲେଇ) ସବୁ ଅଖଜିଆ କାମଯାକ ମତେ ଦେବ ।
କ'ଣ ଟିକିଏ କହିଦେଲି ବୋଲି ଏତେ ରାଗୁଛ ।

ନେତ୍ରାନନ୍ଦ - ହଉ, ଆଗକୁ ନିର୍ବାଚନ । ଦରକାର ବେଳେ କୃଷ୍ଣ ତ ଗଧ ପାଦ ଧରିଥିଲେ ।

ବୁଦ୍ଧିଆ - ହଁ..... ଆଉ ଦେଢ଼ ବର୍ଷ ଅଛି ପରା !

ନେତ୍ରାନନ୍ଦ - ସେଇଥିପାଇଁ ତତେ କହୁଥିଲି ମୂର୍ଖ !
ଆରେ ଭିତରେ ଭିତରେ କାମ କେବେଠୁଁ ଆରମ୍ଭ ହେଇଗଲାଣି ।
ଦେଖି ଚାହିଁ ଆଗରୁ କାମ ଆରମ୍ଭ କରିଦେଇଥିବା ।
ଲୋକଙ୍କୁ ଏମିତି ଅଣ୍ଟେଇ ଦେଇଥିବା ଯେ ଆମ ଦଳ ଚିହ୍ନରେ ମୋହର ବାଡ଼େଇବାକୁ ଫୁରୁସତ ମିଳିବନି -
କିଏ ଡାଳେ ଡାଳେ ଗଲେ ମୁଁ ପରା ପତ୍ରେ ପତ୍ରେ ଯିବି (ଆଖି ନଚେଇ)

ବୁଦ୍ଧିଆ - ହଁ ....
କିଏ ପତ୍ରେ ପତ୍ରେ ଗଲେ ତମେ ପରା ଶିରେ ଶିରେ ଯିବ ।

ନେତ୍ରାନନ୍ଦ - ନ ହେଲେ ତିନି ତିନି ଥର ସରପଞ୍ଚ ହୋଇଥାଆନ୍ତି -
ଏଥର ଖୁବ୍ ଆଗରୁ ଜାଲ ବିଛେଇ ଦେଉଛି -
ଖଣ୍ଡମଣ୍ଡଳରେ ମୋଠୁଁ ଯୋଗ୍ୟ ବିଧାୟକ କିଏ ହବ କହିଲୁ ?
ଏଥର ବିଧାୟକ ନ କଲାଯାଏଁ ଲୋକେ ଛନ୍ଦି ହେଇଯିବେରେ, ବୁଦ୍ଧିଆ !

ବୁଦ୍ଧିଆ - (ଛାତିଟାକୁ 'ଦି' ହାତରେ ଧରି)
ମନଟା ମୋର ଖାଲି ଖୁସିରେ ଉଲୁସି ଉଠୁଛି ଆଜ୍ଞା !

ନେତ୍ରାନନ୍ଦ - ଅଞ୍ଚଳଟାଯାକ ଲୋକଙ୍କୁ ହାତ କରିବାକୁ ହେଲେ, ପ୍ରଥମେ ଏଇ ମାଷ୍ଟ୍ରିଆ ଗୋଷ୍ଠୀଙ୍କୁ ଧରିବାକୁ ହବ । ଆଗ ସ୍କୁଲ ମାଷ୍ଟ୍ରଙ୍କୁ, ତା'ପରେ କଲେଜିଆ ମାଷ୍ଟ୍ରଙ୍କୁ ।
ସେମାନଙ୍କ ମନକୁ ପଢ଼ିବା ଦରକାର ।
ଗୀତା ପଢ଼ିଲେ ସବୁ ଯେପରି ଜାଣି ହେଇଯାଏ, ଜ୍ଞାନଗରିମା

ଫଉଲି ଉଠେ ସେମିତି କଳେ ବଳେ କୌଶଳେ
ଆମକୁ ମାଷ୍ଟ୍ରଙ୍କୁ କରାୟତ୍ତ କରିବାକୁ ପଡ଼ିବ ।
ତା'ପରେ ବାଟ ସାଫ୍, ଖାଲି ବିଶ୍ୱାସ ସୃଷ୍ଟି କରିବାକୁ ହବ -

ବୁଦ୍ଧିଆ - ସତରେ ସରପଞ୍ଚେ ତମ ବୁଦ୍ଧିକୁ ମୁଁ ଶହେ ଥର ତାରିଫ୍ କରୁଛି ।

ନେତ୍ରାନନ୍ଦ - ଶହେ କାହିଁକି ବେଳ ଆସୁଛି ହଜାର ଥର ତାରିଫ୍ କରିବୁ ।

ବୁଦ୍ଧିଆ - ହେଲେ ଛାଡ଼ିଗଲ ନନ୍‌ଫରମାଲ୍ ଶିକ୍ଷକଙ୍କୁ ।

ନେତ୍ରାନନ୍ଦ - ଆରେ ନନ୍‌ଫରମାଲ୍ ସବୁ ତ ମୋ ପକେଟରେ ।
ଗୋଟେ କଲେଜରେ କୋଡ଼ିଏ ସରିକି କର୍ମଚାରୀ ହାଇସ୍କୁଲରେ
ଦଶ କି ବାର : ହଜାର ହଜାର କର୍ମଚାରୀ ତା'ପରେ ପିଲାଏ,
ଅଭିଭାବକ: ସମସ୍ତେ .... କ୍ଷେପିଯିବ ଆମ କ୍ଷେପଣାସ୍ତ୍ର -
ଆଉ ବେଶ୍ ଚିକ୍କଣ ହେବ ଆମ ହାତ -

ବୁଦ୍ଧିଆ - ଫାଇଦା ବି' ଆଡୁ ....
ହାଁ ...
ମୋ ପେଟରେ ଆନନ୍ଦଟା ଗଦ୍‌ଗଦ ହେଇ ପାଟି ବାଟେ ଖାଲି
ଉତୁରି ପଡୁଛି ।

ନେତ୍ରାନନ୍ଦ - ମ୍ୟାନେଜମେଣ୍ଟକୁ ହାତଗୁଞ୍ଜା ଦେଇ ଚାକିରିରେ ପଶିଥିଲେ -
ତା'ପରେ ସରକାରୀ ଅନୁଦାନ ପୁଣି ୟୁ.ଜି.ସି. ରେଟ୍‌ରେ -
ଏ ଶଳେ ! କୋଉ ସରକାରୀ ଇଣ୍ଟରଭ୍ୟୁ ଦେଇଛନ୍ତି ଯେ:
ଦେଇଥିଲେ ଆମର ଏ ଅଯୋଗ୍ୟଗୁଡ଼ାଙ୍କୁ କୋଉ ଚାକିରି
ମିଳିଯାଇଥାଆନ୍ତା ।
ନାଁ କୁ ଚାକିରି ? ସମସ୍ତଙ୍କର ନିଜ ନିଜର ବେଉସା -
ଦେଖୁନୁ - ଆମ ନରିଭାଇନାଙ୍କ ପୁଅ କମଳପୁର କଲେଜର ଅଧକ୍ଷ,
ସଦାବେଳେ ଥିବ ବାପାର ଧାନ ଗୋଦାମରେ ।
ଉପଭାଇଙ୍କ ପୁଅ ସୁକାମିନୀ ମହିଳା ମହାବିଦ୍ୟାଳୟର ଅଧ୍ୟାପକ -
ଛକରେ ଆଡ୍‌ଡ଼ା ମାରି ଗପ କରୁଥିବ - ପେଟୀ କଣ୍ଟ୍ରାକ୍ଟ୍ରି ତା'ର
ଧନ୍ଦା ।

ବୁଦ୍ଧିଆ - ଆମ ସେ ସୁରିଆଦା ପୁଅ ଯୋଉଟା ପାଞ୍ଚଥରରେ ମେଟ୍ରିକ୍ ପାସ୍ କରିଥିଲା ସିଏ ବି ଅଧ୍ୟାପକ ।

ନେତ୍ରାନନ୍ଦ - ହଁ ପରା ଧୁଆ ମୂଳା ଆଉ ଅଧୁଆ ମୂଳୀ ସବୁ ସମାନ - ଶୁଣିଛି ବାପ ନାଁରେ ପାଞ୍ଚଟା ଟ୍ରକ୍ ଆଉ ଦି'ଟା ପ୍ରାଇଭେଟ ବସ୍ ଚାଲିଛି - କେବଳ ଆମରି ପାଇଁ ଏତେ ସବୁ ସୁବିଧା ସୁଯୋଗ ଏମାନଙ୍କୁ ମିଳିଛି ।

ବୁଦ୍ଧିଆ - ଶହେ କଥା ପଚାରିଲେ ପଦେ କଥା ବାହାରୁ ନ ଥିଲା ପାଟିରୁ, ଆମ ସାହି ରୁନୁଦେଇ ଝିଅ ଟିକିଲିର ।
ବଡ଼ ପାଟିରେ କିଛି କହିଦେଲେ ନାକକାନ୍ଦୁରୀ ଟିକିଲି ସୁଁ ସୁଁ କାନ୍ଦି ପକଉଥିଲା ସିଏତ ଯୋଉ ଫୁଟାଣିରେ କଥା କହୁଛି ଅନେକ ତାଜୁବ୍ -
ଅମରେନ୍ଦ୍ର କୃପା ମହିଳା ମହାବିଦ୍ୟାଳୟର ସିଏ କୁଆଡ଼େ ଅଧ୍ୟକ୍ଷା ହେଇଗଲାଣି -
ଏବେ ତା' ଫାର୍ମ ହାଉସ୍ ଦେଖିଛଟି ସରପଞ୍ଚେ !

ନେତ୍ରାନନ୍ଦ - ଦେଖିଛି । ସେତିକି କ'ଣ ! ତୁ ଜାଣିନୁ । ସେ କଲେଜର ଯିଏ ପିଇଟି ଅଛି ତା'ର ରାଜଧାନୀରେ ବିଉଟି ପାରଲୋର ।
ଚାରିଟା କୋଠା ତା'ର ।

ବୁଦ୍ଧିଆ - କଲେଜ ଏଠି, ଚାକିରି ଏଠି ....

ନେତ୍ରାନନ୍ଦ - ବ୍ୟବସାୟ ସେଠି ।

ବୁଦ୍ଧିଆ - କେମିତି ଚଳୁଛି ?

ନେତ୍ରାନନ୍ଦ - ନେଇ ଆଣି ଥୋଇପାରିଲେ ସବୁ ବ୍ୟବସାୟ ଚଳିବ ।
ମାସରେ ଏମାନେ କେତେଦିନ କଲେଜ ଯାଆନ୍ତି ?
କେତେ କ୍ଲାସ ନିଅନ୍ତି ?

ବୁଦ୍ଧିଆ - ଏଠି ଚଳୁଛି ଆମ ସାହାଭରସାରେ —
ଅନୁଷ୍ଠାନ ଚଳିବା ସଙ୍ଗେ ସଙ୍ଗେ ଆମେ ବି ଚଳିବା ।

ନେତ୍ରାନନ୍ଦ - ଇଏ ହେଲା ପୁଣ୍ୟ ଭୂଇଁ ଦେବଭୂମି, ଭାରତବର୍ଷ ।
ପୁଣ୍ୟ ବଳରେ ଏ ଭୂଇଁରେ ଆମେ ଜନ୍ମ ନେଇଛେ ।
ଆମେ ସବୁ ଦେବଗଣରେ ଜନ୍ମ ।
ଥୋକାଏ ଖଟି ଖଟି ବେଦମ ଆଉ ଆମେ ? ହାଃ ହାଃ.....

ବୁଦ୍ଧିଆ - ଠକି ଠକି ଆରାମ (ହସ)

ନେତ୍ରାନନ୍ଦ - ଧେତ୍ ତେରି ।
ଧୀରେ କହ ଧୀରେ ।
ବୁଦ୍ଧିଆ !
ଦେଖୁଛି ବାଟଘାଟରେ ଜୋର୍‌ରେ କହି ବେଇଜ୍ଜତ କରିଦବୁ ।
ଆଉ ଯଦି ବୁଢ଼ା କାନରେ ପଡ଼ିଯାଏ ...

ବୁଦ୍ଧିଆ - କ'ଣଟାଏ ହେଇଯିବ ?
ଇଏ କଳିଯୁଗ, ସତ୍ୟ ମାର୍ଗରେ ଚଳିଲେ,
ଖାଲି ଛିଡ଼ିବ, ଖାଲି ଛିଡ଼ିବ - ବଢ଼ିବ ନାହିଁ ।
ବୁଢ଼ା ସୁରପ୍ରତାପ ଯେତେ ନ୍ୟାୟବନ୍ତ ପୁରୁଷ ବୋଲେଇଲେ ବି,
କିଏ ତାଙ୍କୁ ପଚାରୁଛି ?
ସଭାରେ ବଡ଼ ପାଟିରେ ଏମ୍.ଡି.ଏଚ୍. କଥା ମୁଁ କହିଦେବାରୁ
ବୁଢ଼ା କଥା ନ ବୁଝି ଚାହିଁଲା - ଦେଖିଛ ଟି ?

ନେତ୍ରାନନ୍ଦ - ସତିଆଟା ପଛରେ ଥାଇ ଚିଲେଇକି କହିଲା
ଏମ୍.ଡି.ଏଚ୍. ମାନେ ମାଲ୍ ଦେଲେ ହବ ।

ବୁଦ୍ଧିଆ - ବୁଢ଼ା ସୁରପ୍ରତାପ ବୁଝିପାରି ରାଗିକି ନିଆଁ ହେଇଗଲା ।
କିନ୍ତୁ ବୁଢ଼ାର ପ୍ରଖର ବୁଦ୍ଧି ।

ନେତ୍ରାନନ୍ଦ - ହଁ....
ଜବାବ୍ ଦେଲା ପରା ମାଡ଼ ଦେଲେ ହବ ଖାଲି
ମାଲକୁ ବଦଳେଇ ମାଡ଼ କରିଦେଲା ବୁଢ଼ା ।
ଦୁର୍ନୀତି ଲୋପ ହେବ । ଛାଡ଼ ...
ତାଙ୍କ ଅମଳ ଗଲାଣି (ଶାଣିତ)

କଲେଜଟାଏ କରିଦେଇଛନ୍ତି ବୋଲି ସଭିଙ୍କ ମୁଣ୍ଡ କିଣିଛନ୍ତି ନା କ'ଣ ?
ଯାହା କହିବେ ସମସ୍ତେ ମଥା ନୁଆଁଇ ହଁ ଭରିବେ ।
କଦାପି ହେଇପାରିବନି ।
ଆରେ ତାଙ୍କ କଲେଜ ସିନା ବର୍ତ୍ତିଯିବ ଆଉ ଏ ଖଣ୍ଡମଣ୍ଡଳରେ ଆମ ଗଢ଼ିଥିବା କଲେଜ କେହି ଆମକୁ ଏମ୍.ଡି.ଏଚ୍. ଦେବେ କି ?

ବୁଦ୍ଧିଆ - ସେଇଥିପାଇଁ ସଭାରେ ତେଢ଼ିକି ଟାଣଟାଣ ଦି'ପଦ
ମୁଁ ଶୁଣେଇବା ପରେ ଟୋକାଏ ଯେମିତି ତମ ଠାର ବାରିଛନ୍ତି
ବୁଢ଼ାକୁ କଥା କୁହାଇଦେଲେନି -
ସୁରପ୍ରତାପ ରାୟ ସଭା କେତେବେଳେ ଛାଡ଼ିଲେ କେହି ଜାଣିପାରିଲେନି -
ବୈଷ୍ଣବ ପଣ୍ଡିତ ପୁଅ ପରା କହିଲା; ଚାରିଆଡ଼ ଅନ୍ଧାର ।
ବୁଢ଼ା ଯୁଗକୁ ଲଣ୍ଠନ ଦେଖାଉଛି ।

ନେତ୍ରାନନ୍ଦ - ଶୁଣିଲୁଣି ।
କଲେଜ କମିଟିକୁ ବୁଢ଼ା ଇସ୍ତଫା ପତ୍ର ପଠେଇସାରିଛି ।

ବୁଦ୍ଧିଆ - ତା' ହେଲେ ଗୋଟି ଚଳେଇବାକୁ ମଉକା ମିଳିଗଲା ।
ଏଥର ତମେ ସଭାପତି ।

ନେତ୍ରାନନ୍ଦ - ହୁଁ ...... ଦେଖାଯାଉ ପରୀକ୍ଷା ପାଲାଟା ଆଗ ସୁରୁଖୁରୁରେ ସରିଯାଉ ।

[ଅନ୍ଧାର]

## ଚତୁର୍ଥ ଦୃଶ୍ୟ

[ତଳ ମଞ୍ଚର ଡାହାଣପଟ - ଡ. ଆନନ୍ଦ, ଡ. ବ୍ରଜକିଶୋର ଓ ଚୌଧୁରୀଙ୍କ ଜିନିଷପତ୍ର ଏବଂ ପାଖରେ ନିଜ ନିଜର ସାମାନ୍ ଗଛ ମୂଳରେ ଛୋଟ ଚଉତରା ଉପରେ ଚୌଧୁରୀ ବସି ସମୁଦାୟ ଜିନିଷକୁ ଗଣି ଚାଲିଛନ୍ତି ]

ଡ. ବ୍ରଜକିଶୋର - ଆମର ଦି' ଜଣଙ୍କର ଦି'ଟା ; ହେଲେ

ଚୌଧୁରୀ - ମୋର ଅଧିକ ଗୋଟାଏ, ଗୋଟେ ହ୍ୟାଣ୍ଡ ବ୍ୟାଗ୍ ଆଉ ଏଇ ବଡ଼ ବ୍ୟାଗ୍‌ଟା ।

ଡ. ଆନନ୍ଦ - ସେଥିରେ କ'ଣ ଅଛି ?

ଚୌଧୁରୀ - ଦି'ଟା ଟିଫିନ୍ କ୍ୟାରିଅରରେ ପିଠା, ଆଉ ପାଣି ବଟଲ୍ ।

ଡ. ଆନନ୍ଦ - ଗୋଟେ ପେଟକୁ ଦି'ଟା କ୍ୟାରିଅର୍ !

ଚୌଧୁରୀ - ମୁଁ କି ମୋ ଶ୍ରୀମତୀ କେହି ସ୍ୱାର୍ଥପର ନୁହେଁ ।

ଡ. ଆନନ୍ଦ - ମାନେ ?

ଚୌଧୁରୀ - ତିନିଜଣଙ୍କ ପାଇଁ ହେଇ ଆହୁରି ବଳିବ ।

ଡ. ବ୍ରଜକିଶୋର - ଓଃ.. ଆପଣ ତା'ହେଲେ ମହାହୁସିଆର ।

ଚୌଧୁରୀ - ମୁଁ ଯେତିକି ହୁସିଆର ନୁହେଁ ମୋ ସ୍ତ୍ରୀ ଭାରି ହୁସିଆର - କହିବେ ! ବାହାର ଜିନିଷ ଖାଇଲେ ପେଟ ଖରାପ ହବ, ପାଣି ସାଥିରେ ନବ ଇତ୍ୟାଦି ଇତ୍ୟାଦି କେତେ ଯତ୍ନ । ମତେ ପରା ରାତି ଚାରିରୁ ଉଠେଇ ସବୁ କାମ ସିଏ ନିଜେ କରିଛନ୍ତି ।

ଡ. ବ୍ରଜକିଶୋର - ଖୁବ୍ ଭଲ ।

ଚୌଧୁରୀ - ଆଉ ପୁଣି କହିବେ ଦି' ତିନି ଘଣ୍ଟାରେ ଅଳ୍ପ ଅଳ୍ପ କିଛି କିଛି ଖାଇଦେଉଥିବ । ପାଣି ପିଉଥିବ -
ନ ହେଲେ ଦୂର ବାଟକୁ ପେଟ ଗରମ ହୋଇଯିବ ।

ଡ. ବ୍ରଜକିଶୋର - ବାଃ ...
ତା'ହେଲେ ଆଜିର ଆମର ସ୍ୱାସ୍ଥ୍ୟ ରକ୍ଷା ଦାୟିତ୍ୱ ଆପଣଙ୍କ ହାତରେ ....
(ଡ. ବ୍ରଜକିଶୋର ହାତଘଣ୍ଟାକୁ ବାରମ୍ବାର ଦେଖୁଥିବେ - ମୁହଁରେ ବିରକ୍ତିର ଚିହ୍ନ - ବେଳେ ବେଳେ ଉଠି ମଞ୍ଚର ଭିତରପଟକୁ ଦେଖୁଥିବେ)

ଡ. ଆନନ୍ଦ - (ବଡ଼ ପାଟିରେ) କ'ଣ ସରିଲା । ଡ୍ରାଇଭର !

ଡ୍ରାଇଭର - (ଭିତରୁ) ଆଜ୍ଞା ଚାଲିଛି । ଆଉ ଟିକିଏ ....

ଚୌଧୁରୀ - ବଡ଼ ହଇରାଣ କଲା ଏ ଡ୍ରାଇଭରଟା (ରହି)
ସାର୍ ! ଆପଣ ଜିପ୍ ଗାଡ଼ିଟିଏ ବୁଝିଥିଲେ ଭଲ ହେଇଥାଆନ୍ତା ।

ଡ. ବ୍ରଜକିଶୋର - ଡ. ଆନନ୍ଦ ମତେ ଫୋନ୍‌ରେ କାର୍ କଥା କହିଥିଲେ -
ମୁଁ ତିନି ଚାରିଟା କାର୍ ବୁଝିବା ପରେ ଦେଖିଲି ଏ କାର୍ କଣ୍ଡିସନ୍ ଭଲ । ତା' ଛଡ଼ା ଡ୍ରାଇଭର ବି ବେଶ୍ ପୋଖତ ଜଣାଗଲା -

ଡ. ଆନନ୍ଦ - ଦଶ-ବାର କିଲୋମିଟର ଆସିବାକୁ ପାଖାପାଖି
ପଇଁଚାଳିଶ ମିନିଟ୍ ନେଲାଣି - କହିବାରୁ ବିରକ୍ତ ହେଇ କହୁଛି - 'କ'ଣ ଉଡ଼େଇନେବି' ଲୋକଗୁଡ଼ା ବି ରାସ୍ତା ଉପରେ ଧାନ, ଡାଲି ସବୁ ତ ଶୁଖାଉଛନ୍ତି ହର୍ଣ୍ଣ ଦେଲେ ଶୁଣୁ ନାହାନ୍ତି -

ଚୌଧୁରୀ - ବଡ଼ ବିରକ୍ତିକର ।

ଡ. ଆନନ୍ଦ - ଜିପ୍ ଯଦି ଡ. ବ୍ରଜକିଶୋର ବୁଝି ଥାଆନ୍ତେ ଭଲ ହେଇଥାଆନ୍ତା ।

ଚୌଧୁରୀ - କ'ଣ ଜିପ୍ ହର୍ଣ୍ଣରେ ଗାଈ ବଳଦ ଆଡ଼େଇ ଯାଇଥାଆନ୍ତେ ?

ଡ. ବ୍ରଜକିଶୋର - ସେଇ ଏକା କଥା -

ଡ. ଆନନ୍ଦ - ଡ. ବ୍ରଜକିଶୋର ! ଆପଣ ଟିକେ ଯାଇ ନିଜେ ଦେଖିଆସନ୍ତୁ -
ସେ ଡ୍ରାଇଭର ଗାଡ଼ିଟା ସଜାଡୁଛି ନା ନାହିଁ ?

ଡ. ବ୍ରଜକିଶୋର - ହଁ, ଏଠିକି ଦିଶୁଛି ବନେଟ୍ ତ ଉଠେଇଛି ।
ଚୌଧୁରୀ - ବିଚରା ଖରାଟାରେ ....
ଡ. ବ୍ରଜକିଶୋର - ଆପଣମାନେ ଗଛମୂଳେ ବସିଥାଆନ୍ତୁ -
ମୋର ବିଳମ୍ବ ହେଇପାରେ -
ଦରକାର ହେଲେ ମୁଁ ଡ୍ରାଇଭରକୁ ସାହାଯ୍ୟ କରିବି ।
ଡ. ଆନନ୍ଦ - ଶୀଘ୍ର ଯାଆନ୍ତୁ - (ଘଣ୍ଟା ଦେଖି)
ଦଶ ପଇଁଚାଳିଶ ....
(ଡ. ବ୍ରଜକିଶୋର ଯାଇଛନ୍ତି - ଚୌଧୁରୀ ନିଜ ଲୁଗାପଟା ସଜାଡ଼ି ନେଇଛନ୍ତି - ରୁମାଲରେ ଝାଳ ପୋଛି ନେଇଛନ୍ତି)
ଆମର କାମବେଳକୁ ଗାଡ଼ିଟା ଖରାପ ହେବାକୁ ଥିଲା ।
ଚୌଧୁରୀ - କ'ଣ କରିବା ?
ଡ. ଆନନ୍ଦ - କିଛି କରିବାର ନାହିଁ ତ୍ରିଶଙ୍କୁ ପରି ଝୁଲିରହିବା ।
ଚୌଧୁରୀ - ନୈରାଶ୍ୟ ସମୟେ ସମୟେ
ଆଶାର ଝଲକ ସଂଚାର କରେ: ସାର୍ !
ଗାଡ଼ି ଠିକ୍ ହେଇଯିବ - ରାସ୍ତା ଆଗକୁ ଭଲ ଥିବ - ଲୋକମାନେ ସମସ୍ତେ ଆମକୁ ସହଯୋଗ ଦେବେ ଇତ୍ୟାଦି ... ଇତ୍ୟାଦି...
ଡ. ଆନନ୍ଦ - (ସ୍ୱଳ୍ପ ହସ) ଦିନର ଆଭାସ ପ୍ରଥମ ସକାଳରୁ ଜଣାଯାଏ ...
ଚୌଧୁରୀ - କାଲି ଯୋଉମାନେ ସ୍କ୍ୱାର୍ଡ଼ରେ ଯାଇଥିଲେ - ଶୁଣିଛି -
ଖୁବ୍ ସଫଳ ହେଲେ ସେମାନେ -
ଅଖାଭର୍ତ୍ତି ଚିରୁକୁଟି - ସେଣ୍ଟର ରଦ୍ଦ କରିବାକୁ ପ୍ରସ୍ତାବ ଯାଇଛି -
ଡ. ଆନନ୍ଦ - ସମଗ୍ର ଶିକ୍ଷକ ସମାଜ ବଦ୍‌ନାମ ।
ଚୌଧୁରୀ - ଖାଲି ଏମାନେ କାହିଁକି ?
ଜନସାଧାରଣ ବି ବେଶ୍ ସହଯୋଗ ଦେଉଛନ୍ତି, ସାର୍ !
ଡ. ଆନନ୍ଦ - ମୁଁ ବୁଝିପାରୁନି - କ'ଣ ଏମାନଙ୍କର ସ୍ୱାର୍ଥ ।
ଚୌଧୁରୀ - ଗଭୀରଭାବରେ ଚିନ୍ତା କରିଛି;
ଏ ସମ୍ପର୍କରେ ଖବରକାଗଜରେ ସଂଦର୍ଭ ଛାପିଛି ।

ଡ. ଆନନ୍ଦ - କିନ୍ତୁ ଫଳ - ଡ. ଚୌଧୁରୀ !

ଚୌଧୁରୀ - ସେମିତି ଆଶାଜନକ ନୁହେଁ ।
ବ୍ରିଟିଶ୍‌ରାଜରେ ଯେମିତି ଆମେ ସମସ୍ତେ ଚେଇଁ
ଶୋଇରହିଥିଲେ ସେମିତି ଆମେ ବି ସବୁ ବୁଝି ନିଘୋଡ଼ ନିଦରେ
ଏବେ ବି ଘୁଙ୍ଗୁଡ଼ି ମାରୁଛେ ।
ନିଦ ଭାଙ୍ଗିବା ବେଳକୁ ଆମ ବୟସ ସରିଯାଇଥିବ ।
କେତେ ଯେ ଭାବୀ-ବଂଶଧର ଆମର ଏଇ ଗୁଳାରେ
ଚାଲି ଚାଲି କ୍ଳାନ୍ତ ହେଇଯିବେ - ବୁଝିବାବେଳକୁ ଆଖି ସାମ୍ନାରେ
କାଳର ଗତିରେ ସହସ୍ର ବର୍ଷ ଅତିକ୍ରମି ଯିବ -

ଡ. ଆନନ୍ଦ - ତା' ହେଲେ ଚୌଧୁରୀ ! ଆମର ଏ ଅଭିଯାନ ?

ଚୌଧୁରୀ - ଅଭିଯାନ !
ତାଳଗଛକୁ ଫୋପଡ଼ ପିଙ୍ଗିବା ସଙ୍ଗେ ସମାନ ।

ଡ. ଆନନ୍ଦ - ତା' ହେଲେ

ଚୌଧୁରୀ - ଯେତେଦିନଯାଏ ଟର୍ଣ୍ଣ କି (Turn Key)
ରାଜନୀତିଆ ଲୋକଙ୍କ ହାତରେ ଥିବ ସେତେଦିନ ଆମେ ସମସ୍ତେ
ଏମିତି ଭୁଆଁ ବୁଲୁଥିବା -

ଡ. ଆନନ୍ଦ - ଟର୍ଣ୍ଣ କି !

ଚୌଧୁରୀ - ହଁ
ଚାବି ଯୁଆଡ଼କୁ ମୋଡ଼ିବେ - ସିଆଡ଼େ ସେମାନଙ୍କର ଫାଇଦା...
ଭଲରେ ଫାଇଦା ଭେଲରେ ବି ଫାଇଦା ....

ଡ. ଆନନ୍ଦ - ଓଃ ...
ଆଚ୍ଛା ଡ. ବ୍ରଜକିଶୋର କ'ଣ ଆମ ଡେଷ୍ଟିନେସନ୍ ସମ୍ପର୍କରେ ସୂଚନା
ଡ୍ରାଇଭରକୁ ଦେଇସାରିଲେଣି କି ?

ଚୌଧୁରୀ - ସେଇଟା ସିକ୍ରେଟ !
ବୋଧହୁଏ କହି ନାହାନ୍ତି

ମୁଁ ଶୁଣିଛି ଡ୍ରାଇଭର ପଚାରୁଥିଲା
ମୁକ୍ତିଆର ପାଟଣାର କାହାଘରକୁ ଯିବେ ବୋଲି ....
ଡ. ବ୍ରଜକିଶୋର ତାକୁ ଭୁଲେଇ ଦେଇଛନ୍ତି ।

ଡ. ଆନନ୍ଦ - ଡ. ବ୍ରଜକିଶୋର ଟିକିଏ ଖୋଲା ସ୍ୱଭାବର ...
ଗାଡ଼ି ଧିମେଇ ଚାଲିବା ଭିତରେ
କଥାବାର୍ତ୍ତା ବେଳେ ଯଦି ଡ. ବ୍ରଜକିଶୋର ....

ଚୌଧୁରୀ - ରାସ୍ତା ଏତେ କଦର୍ଯ୍ୟ -
ସେଥିରେ ଡ୍ରାଇଭରର ଧାଉଁ ଧାଉଁ କଡ଼ା ବ୍ରେକ୍ ।
ମୁଁ ତ କେତେଥର ଆଗକୁ ଝୁଙ୍କିପଡ଼ିଛି -
ସେଥିରେ ଡ. ବ୍ରଜକିଶୋରଙ୍କର ଘୁଙ୍ଗୁଡ଼ି .... କହିବେ କେତେବେଳେ...

ଡ. ଆନନ୍ଦ - ଦେହ ମୁଣ୍ଡ ଖଣ୍ଡିଆ ଖାବରା ହେଇଥାଆନ୍ତେ -
ମୁଁ ତାଙ୍କୁ କେତେ ସତର୍କ କରିଛି - ତଥାପି ତ ଢୁଳେଇଲେ ...

ଚୌଧୁରୀ - ରାତିଯାକ ଆପଣଙ୍କ ଫୋନ୍ ପାଇବା ପରଠୁଁ ଆଉ ଶୋଇ ନାହାନ୍ତି ।
କହୁଥିଲେ କୁଆଡ଼େ ତାଙ୍କୁ ଟେନ୍‌ସନ୍ ହେଇଗଲା ...
ବୟସ ତ ସାର୍‌ଙ୍କୁ ହେଇଗଲାଣି ....

ଡ. ଆନନ୍ଦ - ହଁ ଆମେ ସବୁ ଆଉ ଦି' ଚାରି ବର୍ଷ ଭିତରେ ଅବସର ନେବୁ...

ଚୌଧୁରୀ - ଅବସର ପରେ କୋଉଠି ରହିବେ ?

ଡ. ଆନନ୍ଦ - ଆମ ଗାଁରେ - ଆମ ଗାଁ ଠିକ୍ ଏମିତି ....
ଦି' ଧାର ଯାକ ଧାଡ଼ି ଧାଡ଼ି ଘର -
ଗାଁ ମୁଣ୍ଡରେ ବଡ଼ ପୋଖରୀ -
ପୋଖରୀ ମୁଣ୍ଡରେ ମହାଦେବ ମନ୍ଦିର,
ଗାଁ ପୋଖରୀରେ କଇଁ ଆଉ ମେଞ୍ଚା ମେଞ୍ଚା ପଦ୍ମଫୁଲ -
ସୁନା ସୋରିଷ ଫୁଲର ପଟାଳି ପଟାଳି ସୁନ୍ଦର ରୂପକାନ୍ତି -

ପାଚିଲା ବିସ୍ତୀର୍ଣ୍ଣ ଧାନକ୍ଷେତ -
ସତେ ଯେମିତି ଆଖି ପକେଇ ଚାହିଁଲେ ଆଖି ପାଇବନି -
ପ୍ରକୃତିର ପ୍ରଶାନ୍ତ ଅନୁପମ ମେଖଳା ...
ସେଇଠିକି ଭାବିଛି ଫେରିଯିବି .... ହଁ

(ଗାଡ଼ି ଷ୍ଟାର୍ଟ ହେବାର ଶବ୍ଦ)

ଚୌଧୁରୀ - ଗାଡ଼ି ଷ୍ଟାର୍ଟ ନେଲାଣି - ଚାଲନ୍ତୁ .... ବାହାରିବା ...
(ସମସ୍ତେ ବ୍ୟାଗ୍ ନେଇ ଯିବାବେଳେ ଆଲୋକ ଲିଭିଛି - ଗାଡ଼ି ଚାଲିବାର ଶବ୍ଦ ପୃଷ୍ଠ ମଞ୍ଚରୁ)

[ଅନ୍ଧାର]

## ପଞ୍ଚମ ଦୃଶ୍ୟ

[ ସରପଞ୍ଚ ନେତ୍ରାନନ୍ଦ ନାୟକଙ୍କ ଡ୍ରଇଂ ରୁମ୍ । ସମୟ ସକାଳ - ମଞ୍ଚକୁ ଆଲୋକ ଆସିବା ପରେ ବୁଦ୍ଧିଆ ଆସିଛି - ଏ ପାଖ ସେ ପାଖ ହେଇ ସରପଞ୍ଚଙ୍କୁ ନ ପାଇ ଚେୟାରରେ ବସିଛି - ପାଖ ଥାକରୁ ଖବରକାଗଜ ଆଣି ପଢ଼ିଛି - କିଛି ସମୟ ପରେ ମୁଣ୍ଡ ଟୁଙ୍ଗାରି ମନେ ମନେ କହିବା ପରି ହେଇଛି ]

ବୁଦ୍ଧିଆ - (ସ୍ୱଗତ) ଦାଦା ତ ଦାଦା ...

ଆସ୍ତେ ଆସ୍ତେ ଏ କଷି ଦାଦାଗୁଡ଼ା ବି

ଏ ଲାଇନ୍‌ରେ ଧସେଇ ପଶି ଆସିଲେଣି ହୋ ...

ଉଦ୍‌ବାଇଜା ହେଇ ଯେମିତି ଶୋଷିନେବେ -

ଆହେ ଏତେ ବୁଦ୍ଧି ଖଟେଇଲି -

ଭାତକୁ ଶୁଖେଇ ଶୁଖେଇ ମୁଁ ନିରିମାଇଲ କଲି -

ଫେଣେଇ ଫେଣେଇ

କଥାର ମଞ୍ଜି କାଢ଼ି ଗୂଢ଼ ତତ୍ତ୍ୱକୁ କାଢ଼ିଲି -

ହେଲେ ଏ କଷି ମେଞ୍ଚଡ଼ଗୁଡ଼ାଙ୍କର

ଭାଗ ଅଧାରୁ ଅଧା

ନା .... ନା ... ନା ... ଆଉ ପାରିବିନି ...

ମାଇକିନିଆଟା ଏ କଥା ଜାଣିଲେ .... ଦେହ ତା'ର

ରାଗରେ ମୋ ଉପରେ ଗରଗର ଡାକିବ ....

କହିବ - ଅପାରଗ ମୂର୍ଖ କୋଉଠିକାର । ଯାହା ହଉ; ତାକୁ କହିନି...

(କଥା ମଝିରେ ସରପଞ୍ଚ ନେତ୍ରାନନ୍ଦ ପଶି ଆସି ଶେଷୋକ୍ତି ଶୁଣିଛନ୍ତି)

ନେତ୍ରାନନ୍ଦ - ଆରେ ବୁଦ୍ଧିଆ !

ଏତେ ସକାଳୁ କାହା ଉପରେ ଗାରୁଗାରୁ ହଉଛୁ ।

ବୁଦ୍ଧିଆ - ନାଇଁ କିଛି ନାହିଁ ...

ନେତ୍ରାନନ୍ଦ - କ'ଣ କହୁଥିଲୁ ପାଟିରେ ବାଟୁଳି ବାଜୁ ନ ଥିଲା
ପଚାରିଲାରୁ କହୁଛୁ ... ନାଇଁ ... କିଛି ନାହିଁ ...
ଆରେ ସଫା ସଫା କହୁନୁ

ବୁଦ୍ଧିଆ - ଭାଗଟା .... (ଜିଭ କାମୁଡ଼ି)
ଛାଡ଼ ... ସେଇ ଚୋକାଏ ....

ନେତ୍ରାନନ୍ଦ - କ'ଣ ଚୋକାଏ ?

ବୁଦ୍ଧିଆ - ରାଗିବନି ଯଦି ସତ କହିବି -

ନେତ୍ରାନନ୍ଦ - ଜମା ରାଗିବିନି - କହ !

ବୁଦ୍ଧିଆ - କାଲି ରାତିଯାକେ ଶୋଇନି - କହିଲ
ଏଇ ପାଞ୍ଚ ବର୍ଷ ହେଲାଣି
ଚାଷ ବାସ ସବୁ ଛାଡ଼ି ତମରି ପଛରେ ଅଛି ନା ନାହିଁ ?

ନେତ୍ରାନନ୍ଦ - ଅଛୁ ।

ବୁଦ୍ଧିଆ - ଘରେ ସବୁବେଳେ ଗାଳି - କେତେ ସମ୍ଭାଳିବି -

ନେତ୍ରାନନ୍ଦ - କଷ୍ଟ କଲେ କୃଷ୍ଣ ମିଳେ -

ବୁଦ୍ଧିଆ - କୋଉଠୁ ମିଳିଲା ? ସେଇ ଚୋକାଏ ମୋ ଭାଗରୁ ଅଧା ନେଲେ ।

ନେତ୍ରାନନ୍ଦ - ଓଃ ....
ବୁଝିଗଲି ଏବେ -
ଆରେ, ଘୋ ଘା ବାହୁବଳ, ମାଇକ୍ ଧରି ଗାଁ ଗାଁ ସ୍ଲୋଗାନ
କ'ଣ ତୁ ଦେଇପାରିବୁ ?

ବୁଦ୍ଧିଆ - ହେଲେ;
ବୁଦ୍ଧି ତ ମୁଁ ଦେବି ...

ନେତ୍ରାନନ୍ଦ - ବୁଦ୍ଧିଆ !

ବୁଦ୍ଧିଆ - ବୁଦ୍ଧିଆ ମଙ୍ଗ ଯୁଆଡ଼କୁ ମୋଡ଼ିବ ଡଙ୍ଗା ସେଣିକି ମୁହେଁଇବ -
ସୁରପ୍ରତାପ ପରି ମଙ୍ଗୁଆଳ -
ଖଣ୍ଡମଣ୍ଡଳରେ କିଏ ଅଛି କହିଲ ?

କ'ଣ ନ କରିଛନ୍ତି ସିଏ:
ସ୍କୁଲ, କଲେଜ, ଡାକ୍ତରଖାନା, ଥାନା ପାଇଁ ତାଙ୍କରି ଅବଦାନ -
ଏତେସବୁ ଲୋକମାନେ ଭୁଲିଲେ କେମିତି ?
ସୁରପ୍ରତାପଙ୍କର ପ୍ରତାପ କମିଲା କେମିତି ?
ଇସ୍ତଫା ଦେଲେ କେମିତି ?
ଏ ସବୁ ଭାବିବା ଦରକାର ।

ନେତ୍ରାନନ୍ଦ - ଭାବିଛି ... ଭାବିଛି ବୁଦ୍ଧିଆ !
ଅବଶ୍ୟ ଅନ୍ୟମାନଙ୍କଠୁଁ ଯେତିକି ମିଳିଛି ଶାନ୍ତିଦେବୀ କଲେଜରୁ ତା'ର ଅଧା ମିଳିଛି -
ଆରେ ମୂଳେ ମୂଳେ ବୁଡୁଥିଲା ନା ନାହିଁ ।
ଘରପୋଡ଼ିରୁ ମିଳିଛି ଜାଣ -
ପିଲାଏ ପାଠ ପଢ଼ିଛନ୍ତି - ଅଧ୍ୟାପକମାନଙ୍କୁ ଗୋଡ଼େ ଗୋଡ଼େ ବୁଢ଼ା ଜଗିଛି - ତା'ର କ'ଣ ପରୀକ୍ଷା ଫଳକୁ ଡର ଅଛି ଯେ ତୋ଼ଡ଼ ଦେଖେଇବନି ?

ବୁଦ୍ଧିଆ - ନାଲି କାଇଁଚ ନାଲି କାଇଁଚ
କଥାରେ କଥାରେ ରଖିଛି ପେଞ୍ଚ ।
ଏମିତି ପେଞ୍ଚ ମାଇଲି ଯେ ବୁଢ଼ା ହଟିଲା,
ମ୍ୟାନେଜମେଣ୍ଟ ଆମକୁ ମାଲ୍ ଦେଲା ... ଏମ୍.ଡି.ଏଚ୍. ...

ନେତ୍ରାନନ୍ଦ - ଆରେ କାଦୁଅରେ ପଶିଲେ ପଇସା
ନ ପଶିଲେ ବି ପଇସା

(ହସ ଉଭୟଙ୍କର)

ବୁଦ୍ଧିଆ - ନଈ ପହଁରା ମାଛ ଧରା

ନେତ୍ରାନନ୍ଦ - କଦଳୀ ବିକା ମହାଦେବ ଦେଖା
ତୋ ବୁଦ୍ଧି କି ତାରିଫ ନ କରି ରହିପାରୁନି
ଏଇଟା ତ ଆଦର୍ଶ ରାଜନୀତି ...
ତୁ ଦୁଃଖ କରନା ... ଏଥର ନିଶ୍ଚୟ ପାହାଚ ପରିବର୍ତ୍ତନ -

ବୁଦ୍ଧିଆ - ପାହାଚ ପରିବର୍ତ୍ତନ ?

ନେତ୍ରାନନ୍ଦ - ସରପଞ୍ଚ ପର ପଦବୀ ...

ବୁଦ୍ଧିଆ - ବୁଝିଗଲି ... ତା'ପରେ ଏ ପଦଟା ତ ମୋର

ନେତ୍ରାନନ୍ଦ - ଏଥିରେ ଆଉ ସନ୍ଦେହ ଅଛି - ଘରେ ଦେଖି ଚାହିଁ ଘରଣୀକୁ ବୁଝେଇଦବୁ - ଯାହା ମିଳିଥିଲା ପାର୍ଟି ଫଣ୍ଡକୁ ତ ଅଧା ଗଲା ।

ବୁଦ୍ଧିଆ - ପାର୍ଟି ଫଣ୍ଡ କି ତମ ଫଣ୍ଡ ମୁଁ ବୁଝେନା ...

ନେତ୍ରାନନ୍ଦ - (ରାଗ) ବୁଦ୍ଧିଆ !

ବୁଦ୍ଧିଆ - ସେଣେ ସାତ ସାତଟା କେନ୍ଦ୍ରର ଦାୟିତ୍ୱ ଯାଏଁ ଦେଖେ ... କିଏ ଯଦି ଅଚାନକ ତଦାରଖରେ ଆସିଗଲା .... ତେବେ କଥା ସରିଲା ଜାଣ ...

ନେତ୍ରାନନ୍ଦ - ହାଃ ... ହାଃ ... ହାଃ ...
(ନେତ୍ରାନନ୍ଦ ବୁଦ୍ଧିଆ ଯିବା ବାଟକୁ ଚାହିଁଛନ୍ତି)

[ଅନ୍ଧାର]

## ଷଷ୍ଠ ଦୃଶ୍ୟ

। ଆଲୋକ ଆସିଛି - ସୁରପ୍ରତାପ ବାହାରୁ ଫେରିଛନ୍ତି ... ମୁହଁରେ ବିବ୍ରତ ଓ ଚିନ୍ତାର ସ୍ପଷ୍ଟ ଚିହ୍ନ - ଏପାଖ ସେପାଖ ହେଉଛନ୍ତି - ପ୍ରବେଶ କରିଛନ୍ତି ରମାବୋଉ ।

ରମାବୋଉ - (ନୀରବରେ ସୁରପ୍ରତାପଙ୍କୁ ଚାହିଁଛନ୍ତି)
ଆହେ ଏମିତି କ'ଣ ହଉଛ ?
ତମକୁ ଦି' ଘଣ୍ଟା ହେଲାଣି ମୁଁ ଖୋଜୁଛି: କୁଆଡ଼େ ଯାଇଥିଲ ?

ସୁରପ୍ରତାପ - (ଅନ୍ୟମନସ୍କ ଭାବେ) ଏଇ ନଈବନ୍ଧ ଆଡ଼େ ।

ରମାବୋଉ - ନଈବନ୍ଧକୁ ଯାଇ ଫେରିବାକୁ କ'ଣ ଦି' ଘଣ୍ଟା ଲାଗିଗଲା -
ତମେ ପରା କିଛି ଖାଇନ ?

ସୁରପ୍ରତାପ - ଇସ୍ତଫାପତ୍ରଟା ପଠେଇଦେବା ପରେ କଲେଜ ଆଡ଼େ ଯାଇ ନ ଥିଲି-
ମନଟା ବଡ଼ ଅସ୍ତବ୍ୟସ୍ତ ହେଇପଡ଼ିଲା -
କିନ୍ତୁ ....

ରମାବୋଉ - କ'ଣ ସଫା ସଫା କହୁନ ...
କିନ୍ତୁ କ'ଣ ?

ସୁରପ୍ରତାପ - ଯାହା ଦେଖିଲି ସେଠି ...

ରମାବୋଉ - ଦେଖୁଛି - ତମ ମୁଣ୍ଡ ଏ ଭିତରେ ବିଗିଡ଼ିଗଲାଣି ।

ସୁରପ୍ରତାପ - ମୋ ମୁଣ୍ଡ ରମାବୋଉ ଜମା ବିଗିଡ଼ିନି -
ବିଗିଡ଼ିଛି ଦେଶର ମୁଣ୍ଡ ।
ମାଇକ୍ ଶବ୍ଦ ଶୁଭିଲା - ଥୋକାଏ ପ୍ରଶ୍ନ ପତ୍ରର ଉତ୍ତର ଡାକି ଚାଲିଛନ୍ତି ।

ରମାବୋଉ - ହେ ଭଗବାନ୍ ! ଇସ୍ତଫା ତ ଦେଇଦେଲ ।
ସେ କଲେଜର ମୋହ କ'ଣ ଏ ଯାଏ ତୁଟେଇ ପାରୁନ ?

ସୁରପ୍ରତାପ - କେମିତି ବୁଝେଇବି ?
ଗଛଟିଏ ଲଗେଇ ଯିଏ ପାଣି ଦେଇ କେତେ ଯତ୍ନରେ
ବଢ଼େଇକୁଢ଼େଇ ଥାଏ - ସେ କ'ଣ ସେଥିରୁ ଡାଳଟିଏ
ନିଜେ ହାଣି ଦେଇପାରେ ରମାବୋଉ !
ବରଂ ସେ ଗଛରୁ ବତାସରେ ଯଦି ଡାଳ ଖଣ୍ଡେ ଭାଙ୍ଗିଯାଏ
ତେବେ ତା ଦେହରୁ ଯେମିତି ମାଂସ ଖଣ୍ଡେ ଝଡ଼ି ପଡ଼ିଲା ପରି ଲାଗେ ।
ଆଉ ମୋ ଗଢ଼ିଥିବା କଲେଜ ତ ଏ ଅଞ୍ଚଳର
ହଜାର ହଜାର ଅଧାପାଠୁଆ ଭବିଷ୍ୟତମାନଙ୍କର ଶିକ୍ଷାର ମନ୍ଦିର ।

ରମାବୋଉ - ଯାଉ ସେ କଲେଜ
ମାଟିରେ ମିଶୁ କି ଧୂଳିସାତ୍ ହେଇଯାଉ ।

ସୁରପ୍ରତାପ - ନା ... ନା ରମାବୋଉ !
ସେ କଲେଜ ଯେ ମୋ ମା' ନାଁରେ ହେଇଛି ।

ରମାବୋଉ - କ'ଣ ହେଇଗଲା ସେଠୁ ?

ସୁରପ୍ରତାପ - ତମେ ବୁଝିପାରିବନି ରମାବୋଉ !
କାଲିପରି ମତେ ଲାଗୁଛି ।
ବାପା ମୋର ଅବେଳରେ ଛାଡ଼ି ଚାଲିଗଲେ ସେ ପାରିକୁ ।
ଆମର ଅବସ୍ଥା ସେତେ ଭଲ ନ ଥିଲା ।
ମା' ମୋର କେତେ କଷ୍ଟ ନ ସହିଛି ।
ଉପରୁ ତୋରାଣି ପିଇ ତଳ ଭାତ ପୁଞ୍ଜିକ ମତେ ଖୋଇ ପାଠ
ପଢ଼େଇ ମତେ ମଣିଷ ପରି ମଣିଷ କରି ଗଢ଼ିଛି ।
ମଶାଣି ଭୂଇଁରେ ସିନା ମୋ ମା' ସବୁଦିନ ପାଇଁ ହଜିଗଲା
କିନ୍ତୁ ଏଇ ମନ ଭିତରେ ତା' ସ୍ମୃତିରେ ଗଢ଼ିଥିବା କଲେଜକୁ
ଦେଖିଦେଲେ ମୋ ମା' ଯେମିତି ସବୁଦିନ ପାଇଁ ବଞ୍ଚିଛି ।
ମତେ ହାତ ଠାରି ଡାକୁଛି ...
ଆ ... ଆ ... ମୋ କୋଳକୁ ... କଲେଜ ଯିବାକୁ
ତମେ ମତେ ବାରଣ କରନି ... ରମାବୋଉ !

ରମାବୋଉ - ଏ ନିଉଛୁଣା ଲୋକେ ସିନା ସେତିକି ବୁଝିଲେ ...

ସୁରପ୍ରତାପ - ପାଠ ପଢ଼ିବାପାଇଁ ଦୂରରେ ରହି ମା' ସ୍ନେହରୁ ବଞ୍ଚିତ ହେବାର କଷ୍ଟ ଯେ କେତେ ଯନ୍ତ୍ରଣାଦାୟକ
ତା ମୁଁ ମର୍ମେ ମର୍ମେ ଅନୁଭବ କରିଥିଲି ।
ତା'ର ପରିଣତି ତ ମୋର ଦୃଢ଼ ସଂକଳ୍ପ ।
ଏ ଅଞ୍ଚଳରେ କଲେଜ ହେଲା ମୋ ରିଟାୟାରମେଣ୍ଟର ପୁଞ୍ଜି, ମୋ ମୂଲ୍ୟବାନ ଜମି ସବୁ ଦେଇ ।
ମୋ ମା'ର ସତ୍ତା ମୁଁ କଲେଜରୁ ଅନୁଭବ କରେ - ତମେ କଲେଜକୁ ହତାଦର କରନି ରମାବୋଉ ! ମତେ ବଡ଼ କଷ୍ଟ ହେଉଛି ...

ରମାବୋଉ - ମୋର ଭୁଲ ହେଇଗଲା ... ତମ ମନର ଭାବକୁ
ଠିକ୍ ରୂପେ ବୁଝି ନ ପାରି ମୁଁ ତମ ମନରେ ଆଘାତ ଦେଇଛି -

ସୁରପ୍ରତାପ - କଲେଜକୁ ଇସ୍ତଫାପତ୍ର ପଠେଇବାର କଷ୍ଟ ତ ଯା ଠୁଁ ଯଥେଷ୍ଟ ଅଧିକ ।

ରମାବୋଉ - ସେଇଥିପାଇଁ କହୁଛି - ଚାଲ- ପୁଅ ତ ଲେଖୁଛି
ଭିସା ପାସ୍‌ପୋର୍ଟ ତ ରହିଛି - ଚାଲ କିଛି ଦିନ ତା' ପାଖକୁ ଚାଲିଯିବା - ଭାବୁଛି ତମେ ନିଶ୍ଚୟ ଏ ଯନ୍ତ୍ରଣା ଭୁଲିଯିବ ।

ସୁରପ୍ରତାପ - ଅସମ୍ଭବ - ତମ ମନ ଯଦି କହୁଛି ବରଂ ତୁମେ ଚାଲିଯାଅ -
ମୁଁ ପୁଅକୁ ଫୋନ୍ କରିଦେବି -
ସେ ଆସି ତମକୁ ନେଇଯିବ ।
ମୁଁ ଗାଁ ଛାଡ଼ି କୋଉଠିକି ଯାଇପାରିବିନି -
ଏଇଠି ରହି ଏଇ ଅସୁରଦଳକୁ ମୁକାବିଲା କରିବି -

ରମାବୋଉ - ଏ ବୟସରେ ? ପାରିବ ? ନା ... ତମେ ଯେ ଏକେଲା ...

ସୁରପ୍ରତାପ - ଭୁଲିଯାଉଛ ରମାବୋଉ !
'ଯଥା ପ୍ରଦୀପ୍ତଂ ଜ୍ୱଳନଂ ପତଙ୍ଗା ବିଶନ୍ତି ନାଶାୟ ସମୃଦ୍ଧବେଗାଃ ।'
ସବୁଜ ଘାସରେ ଖେଳୁଥିବା ପତଙ୍ଗମାନେ ଆଷାଢ଼ର ଅନ୍ଧକାର ରାତିରେ ହଠାତ୍ ପ୍ରଜ୍ୱଳିତ ଅଗ୍ନି ଦେଖି ଆନନ୍ଦରେ ଅଧୀର ହେଇ ଝାସ ଦିଅନ୍ତି ।

ଠିକ୍ ସେମିତି ସ୍ୱାର୍ଥ, ଲୋଭ, ମୋହ ବଶବର୍ତ୍ତୀ ହୋଇ
ଏଇ ମଣିଷ ନିଜ ପତନର କାରଣ ହେବ ।
ଆଉ ମୁଁ ଏକେଲା ହେଲେ ବି ସେସବୁତ ଏଇଠି ଦେଖିବି
ଯୁଗେ ଯୁଗେ ସତ୍ୟର ବିଜୟ ...

ରମାବୋଉ - ମୁଁ ଜାଣେ - ସତ୍ୟ ... ସତ୍ୟ ... ସତ୍ୟ କହି
ଆମେ ବହୁତ କଷଣ ପାଇଲେଣି ।
ରକ୍ଷକ ଯୋଉଠି ଭକ୍ଷକ - ଶାସନର ଚାବିକାଠି
ଯୋଉଠି ଅମଣିଷଙ୍କ ହାତରେ
ଶିକ୍ଷା ପ୍ରସାରରେ ଯୋଉଠି ମୂର୍ଖ ରାଜୁତି
ସେଠି ସତ୍ ଆଶା କରିବା ବୃଥା ।

ସୁରପ୍ରତାପ - ଅସତ୍‌ର ସାମ୍ରାଜ୍ୟରେ କ୍ଷଣକ ସୁଖ ଶାନ୍ତି ମିଳେ ।
କିନ୍ତୁ ସତ୍‌ର ଚିରନ୍ତନ ମୂଲ୍ୟବୋଧ ପାଖରେ ସତ୍‌ର ସବୁବେଳେ ଜିତ୍,
ତା'ର ଉଦ୍ଭାସିତ ଆଲୋକରେ ଅସତ୍ ନିଷ୍ପ୍ରଭ - ଖାଲି ଅନ୍ଧାର ...

ରମାବୋଉ - ଦେଶର ସମ୍ପତ୍ତିକୁ ଯୋଉମାନେ ମନଭରି ଲୁଟୁଛନ୍ତି
ଖଟି ଖାଉଥିବା ଲୋକଠୁଁ ଲୁଟି ଠକି ଖାଉଥିବା ଲୋକ ଯେ
ତା'ର ଚଉଦ ପୁରୁଷ ଲାଗି ସଞ୍ଚି ଚାଲିଛି -
ତା ତ ନିଜ ଆଖିରେ ଆମେ ଦେଖି ଚାଲିଛେ ।

ସୁରପ୍ରତାପ - ଠିକ୍, ଠିକ୍ ତମେ ବୁଝିଛ ।
ଶାଗୁଣା ଯେତେ ଉପରେ ଉଡ଼ିଲେ ବି ନଜର ଥିବ ମଢ଼ ଉପରେ ।
ମଣିଷପଣିଆ - ଆଦର୍ଶକୁ ଜଳାଞ୍ଜଳି ଦେଇ
ଏକଆଖିଆ ଶୁକ୍ର ନେତ୍ରାନନ୍ଦ ନାୟକ ନେତା ହବ ବୋଲି ଭେଳିକି ଦେଖାଉଛି ।
ଏ ଦୁର୍ନୀତି ବ୍ୟଭିଚାର ତାର ଅପକର୍ମ ଅଞ୍ଚଳ ଯାକର ମଣିଷ ସହିଲେ ହେଲା ।

ରମାବୋଉ - ନ ସହି ଯିବେ କୁଆଡ଼େ ?
ମୁଁ ଭାବୁଛି -

ଯେତେବେଳଯାଏଁ ଘଣ୍ଟାରେ ଘଣ୍ଟା ମିନିଟ୍ ଓ ସେକେଣ୍ଡ କଣ୍ଟା ବାର
ଉପରେ ଏକାଠି ନ ହେଇଛି ସେତେବେଳଯାଏ
ସମସ୍ତେ ତମରି ପରି ଭାବି ଚାଲିଥିବେ -
ନେତରା ନାୟକ ବୁଦ୍ଧିରେ ତା'ରି ଫାଇଦାରେ ଏ ଅଞ୍ଚଳଯାକର
କଲେଜରେ ରୀତିମତ କପି ଚାଲିଥିବ -

ସୁରପ୍ରତାପ - ନା .... ଯଦି ସ୍କ୍ୱାର୍ଡପାର୍ଟି ଆସିଯାଆନ୍ତେ ...
ମତେ ଫୋନ୍ କରିବାକୁ ପଡ଼ିବ .... (ଭିତରକୁ ଯାଇଛନ୍ତି)

ରମାବୋଉ - (ସୁରପ୍ରତାପଙ୍କ ଯିବାକୁ ଲକ୍ଷ୍ୟ କରି)
କଲେଜ କଲେଜ ହେଇ ତମେ କିଛି ମନେରଖୁନ -
ଦିନ ଆସି କେତେ ହେଲାଣି - ଖାଇବ ନା ନାହିଁ
ମୋର ଭୋକରେ ପେଟ ଜଳିଲାଣି

ସୁରପ୍ରତାପ - (ଭିତରୁ) ବାଢ଼ ....

[ଅନ୍ଧାର]

## ସପ୍ତମ ଦୃଶ୍ୟ

[ ମଞ୍ଚରେ ଡ. ଆନନ୍ଦ, ଡ. ବ୍ରଜକିଶୋର ଓ ଚୌଧୁରୀ ବ୍ୟତିବ୍ୟସ୍ତ - ସମସ୍ତେ ନିଜ ନିଜର ଘଣ୍ଟାକୁ ଚାହୁଁଥାଆନ୍ତି - ମୁହଁରେ ହତାଶ ଚିହ୍ନ ବେଶ୍ ବାରି ହେଇ ପଡୁଥିବ ସେମାନଙ୍କର - ଡ୍ରାଇଭର ଭିତରୁ ଆସି ମଞ୍ଚର ଅନ୍ୟ ପଟକୁ ଚାହିଁବ - ସତେ ଯେପରି କାହାକୁ ଅପେକ୍ଷା ତା'ର । ମୁହଁ ଆଉ ହାତରେ କଳା ଲାଗିଥିବ - ଫେରିଯାଇଛି ଡ୍ରାଇଭର ସେଇ ଗଛମୂଳକୁ କିନ୍ତୁ ଗଛର ସ୍ଥାନ ପରିବର୍ତ୍ତନ ହେଇଥିବ ]

ଚୌଧୁରୀ - ଭାବିଥିଲି; ଡେରି ତ କଲା - ହେଲେ ଫାଷ୍ଟ ସିଟିଂ ସରିବାର ଯଥେଷ୍ଟ ପୂର୍ବରୁ ଯଥାସ୍ଥାନରେ ଡ୍ରାଇଭର ଆମକୁ ପହଞ୍ଚେଇ ଦେବ - କିନ୍ତୁ...

ଡ. ବ୍ରଜକିଶୋର - ତା'ର ଅବା ଉପାୟ କ'ଣ ଥିଲା ।

ଡ. ଆନନ୍ଦ - ହଁ, ରାସ୍ତା ମଝିଟାରେ ବୋଝେଇ ଶଗଡ଼ଟା ଯେତେବେଳେ ନେପେଟେଇ ପଡ଼ିଥିଲା -
ଆମ ଗାଡ଼ି ତ ନା ପଛକୁ ଫେରୁଥିଲା ନା ଆଗକୁ ଯାଇଥିଲା ।

ଚୌଧୁରୀ - (ଦୀର୍ଘଶ୍ୱାସ) ମୋର ବଡ଼ ଚିନ୍ତା ଥିଲା ।

ଡ. ବ୍ରଜକିଶୋର - ଡ. ଆନନ୍ଦ ! ଡ୍ରାଇଭର ବି ବୁହା ବୁହିରେ ସାହାଯ୍ୟ କଲା - ଢେର ପରିଶ୍ରମ କରିଛି ବିଚରା -

ଡ. ଆନନ୍ଦ - ନ ହେଲେ ଆଉ ଡେରି ହୋଇଥାଆନ୍ତା -
ଆଜି କି ଯୋଗରେ ମଣିଷ ବାହାରିଥିଲା ଯେ ମଣିଷ
ନାକେଦମ୍ ହେଲାଣି -

ଡ. ବ୍ରଜକିଶୋର - ଯାହାହେଉ; ଡ୍ରାଇଭର ବ୍ରେକ୍‌ଟା ହଠାତ୍ ମାଡ଼ିଦେଲା ବୋଲି - ଗାଡ଼ି ରୋକିଗଲା ନ ହେଲେ ଭଙ୍ଗା ଶଗଡ଼ଟା ଉପରେ
ସିଧା ଚଢ଼ି ଯାଇଥାଆନ୍ତା -
ତା'ପରେ ଯାହା ଗାଁ ଗଣ୍ଡା ପରିସ୍ଥିତି,
ଡ୍ରାଇଭର ସହ ଆମକୁ ମଧ୍ୟ ଉତ୍ତମ ମଧ୍ୟମ ହୋଇଥାଆନ୍ତା ।

ଚୌଧୁରୀ - ମଣିଷ ରକ୍ଷା ପାଇଗଲା ସେଥିରୁ;
କିନ୍ତୁ ଏବେ ?

ଡ. ଆନନ୍ଦ - ହଁ ସଜାଡୁଛି
ଦେଖାଯାଉ କେତେ ସମୟ ନେଉଛି ।

ଡ. ବ୍ରଜକିଶୋର - ରାଗ ବଢୁଛି ମୋର ଡ୍ରାଇଭରଟା ଉପରେ ...
କହିହେଉନି କି ସହିହେଉନି -
ଆଉ ଘଣ୍ଟାଏ ପରୀକ୍ଷା ସରିବାକୁ ରହିଲା -
ଆମର ଜରୁରୀ କାମ ଅଛି । କେହିତ କର୍ଣ୍ଣପାତ କରୁ ନାହାନ୍ତି,
କାଲାଙ୍କ ପରି ଆମ ଅନୁରୋଧ ଶୁଣୁଛନ୍ତି -
ଯେଝା ବାଟରେ ଯେଝା ଚାଲିଯାଉଛନ୍ତି -

ଡ. ଆନନ୍ଦ - ରାସ୍ତାରେ ଛେଳି ମେଣ୍ଢା ଗାଈଗୋରୁ ସମସ୍ତଙ୍କର
ଅବାରିତ ପ୍ରବେଶ କେମିତି ଅବା ଡିଆଁଇ ନେବ ଗାଡ଼ିଟାକୁ -

ଡ୍ରାଇଭର - (ପ୍ରବେଶ) ଆଜ୍ଞା ମତେ କ୍ଷମା କରିବେ -

ଡ. ବ୍ରଜକିଶୋର - ମାନେ ?

ଡ. ଆନନ୍ଦ - କ'ଣ ଆଁ ଟା କରି ଚାହୁଁଛ ? କ'ଣ ହେଲା କୁହ ?

ଡ୍ରାଇଭର - (ଥରି ଥରି) ମୋ ପାରୁପର୍ଯ୍ୟନ୍ତ ଚେଷ୍ଟା କଲି ...
ଗାଡ଼ି ଷ୍ଟାର୍ଟ ନେଉନି -
କୌଣସିମତେ ଟିଉବ୍ ଗୁରାଗୁରି କରି ମୋବିଲ୍ ଲିକ୍‌କୁ ମାରିଥିଲି -
ବାଟରେ ତ ଦି' ଜାଗା ରହିଗଲା -
ସବୁ ମୋବିଲ୍ ବୋହିଗଲା -
ଆପଣ ଗାଳି କରନ୍ତୁ, ମାରନ୍ତୁ ପଛେ ମୋର ଆଉ କୌଣସି ଉପାୟ ନାହିଁ ।
(ତିନିଜଣଯାକ ମୁହଁ ଚାହାଁଚାହିଁ ହୋଇ ଏ ପାଖ ସେପାଖ ହେଉଛନ୍ତି - ଡ୍ରାଇଭର ଉପରେ ନୀରବରେ ବିରକ୍ତ ହେଇ ଡ. ଆନନ୍ଦ ଦାନ୍ତ କଡ଼ମଡ଼ କରିଛନ୍ତି)

ଡ. ଆନନ୍ଦ - ଟଙ୍କା ନବ ନା ନାହିଁ ?

ଡ୍ରାଇଭର - ଭୁଲ୍ ତ କରିଛି ସାର୍ ।
ମନ ହେଲେ ଦେବେ ନ ହେଲେ ନ ଦେବେ -
ଗାଡ଼ି ମଟର, ଇଞ୍ଜିନ କଥା - ମୁଁ କ'ଣ କରିବି ?

ଡ. ଆନନ୍ଦ - (ଦି' ଶହ ଟଙ୍କା ଦେଇଛନ୍ତି)
କାମ ଆମ୍ଭର ଭଣ୍ଡୁର କଲ -
ପୂରା ଟଙ୍କା ଦେବିନି - ଯାଅ ...

(ଡ୍ରାଇଭର ଚାଲିଯାଇଛି - ଟଙ୍କା ନେଇ ନାହିଁ)

ଡ. ବ୍ରଜକିଶୋର - ଇଡିଅଟ୍ ।
(ନିରାଶ ହେଇ ବସିପଡ଼ିଛନ୍ତି - ପୃଷ୍ଠ ମଞ୍ଚରୁ ସ୍କୁଟର ଆସିବା ଶବ୍ଦକୁ କାନେଇଛନ୍ତି)

ଡ. ଆନନ୍ଦ - ସ୍କୁଟରଟିଏ ଇଆଡ଼େ ଆସୁଛି -

ଚୌଧୁରୀ - ତିନିଜଣ ତ ଯିବା ସମ୍ଭବ ନୁହେଁ ।
ଆମେ ସ୍କୁଟରବାଲାଙ୍କୁ ଅନୁରୋଧ କରିବା -
ଦରକାର ହେଲେ ପେଟ୍ରୋଲ ଖର୍ଚ୍ଚ ଦେବା ଅନ୍ତତଃ ଆମଭିତରୁ କାହାକୁ ହେଲେ ଜଣଙ୍କୁ ମୁକ୍ତିଆର ପାଟଣା କଲେଜ ପର୍ଯ୍ୟନ୍ତ ନେଇଯିବେ ।

ଡ. ଆନନ୍ଦ - ଡ. ବ୍ରଜକିଶୋର ସେଠି ପହଞ୍ଚି ଆପଣ ପ୍ରିନ୍ସିପାଲଙ୍କୁ କହି ଆମପାଇଁ ଗାଡ଼ି ପଠେଇବେ -
ଆମେ ତ ଭଉଁରୀରେ ପଡ଼ିଛେ - କୁଟା ଖିଅକୁ ଆଶ୍ରା କରିବା କଥା -
(ସଙ୍ଗୀତ ଭିତରେ ସ୍ୱଳ୍ପ ଅନ୍ଧାର ପରେ; ଉପର ମଞ୍ଚର ପ୍ରିନ୍ସିପାଲଙ୍କ ଅଫିସ ରୁମ୍)

ପ୍ରିନ୍ସିପାଲ - ଆମ କଲେଜରେ କ୍ଲାସ କେବେ ସ୍ୱସ୍ପେଣ୍ଡ ହୁଏନା, ସାର୍ !
ଅଧ୍ୟାପକମାନେ ଠିକ୍ ସମୟରେ କୋର୍ସ ସାରନ୍ତି- ଏକ୍ସ୍ଟ୍ରା କ୍ଲାସ ମଧ୍ୟ ହୁଏ - ଶେଷ ପାଞ୍ଚ ବର୍ଷର ଏଇ ପରୀକ୍ଷା ଫଳ ଦେଖନ୍ତୁ ।
(ରେଜଲ୍ଟ ସିଟ୍ ଦେଇଛନ୍ତି - ଦେଖିବା ପରେ ଡ. ବ୍ରଜକିଶୋର ଚିନ୍ତା କରିଛନ୍ତି)

ଡ. ବ୍ରଜକିଶୋର - ଅବଶ୍ୟ ପରୀକ୍ଷା ସରିବାକୁ ପାଞ୍ଚ ମିନିଟ୍ ଥିଲା -
ମୁଁ ଏଠି ପହଞ୍ଚିଲି- ଆମ ଗାଡ଼ି ତ ଟ୍ରବୁଲ୍ ଦେଲା -
ଅନ୍ୟମାନେ ବାଟରେ ରହିଯାଇଛନ୍ତି -

ପ୍ରିନ୍ସିପାଲ - ସେମାନେ ବାଟରେ ... ତେବେ ଗାଡ଼ି ...

ଡ. ବ୍ରଜକିଶୋର - ଦରକାର ନାହିଁ । ମୁଁ ଯୋଉ ସ୍କୁଟରରେ ଆସିଲି-
ସେ ଜଣେ କଣ୍ଟ୍ରାକ୍ଟରର ସାନଭାଇ ।
ତାଙ୍କ ଭାଇଙ୍କର ନୂଆ ଜିପ୍‌ଟିଏ ଅଛି ।
ସେମାନଙ୍କୁ ଆଣିବାକୁ ତାଙ୍କ ଡ୍ରାଇଭରକୁ ପଠେଇ ସାରିଛନ୍ତି -
ତା' ଛଡ଼ା ସେକେଣ୍ଡ ସିଟିଂ ପରୀକ୍ଷା କେନ୍ଦ୍ରଗୁଡ଼ିକ ବୁଲିବାକୁ ହବ ।
ଆମକୁ ଛାଡ଼ି ବି ଆସିବ -
ଆଉ ଅସୁବିଧା ନାହିଁ ।

ପ୍ରିନ୍ସିପାଲ - ଆପଣ ନିଜ ଆଖିରେ ଦେଖିଲେ ।
ଖୁବ୍ ଶୃଙ୍ଖଳାର ସହ ଆମ ପରୀକ୍ଷା ଚାଲିଛି ।
ସରକାରଙ୍କ ବାତ୍ୟା ଅନୁଦାନରୁ ଯାହା ମିଳିଥିଲା ଚାରିପାଖ ଦେବାଲରେ ଲଗେଇ ଦେଇଛି -
ବାହାର ଲୋକ ପଶିବା କଷ୍ଟ ... ସାର୍ ।

ଡ. ବ୍ରଜକିଶୋର - ହୁଁ ...

ପ୍ରିନ୍ସିପାଲ - କିଛି ଜଳଯୋଗର ବ୍ୟବସ୍ଥା କରୁଛି ସାର୍ !

ଡ. ବ୍ରଜକିଶୋର - ନା... ଦରକାର ନାହିଁ । ସେ ବ୍ୟବସ୍ଥା ଆମେ କରିବୁ ।
କନକବର୍ଦ୍ଧନ କଲେଜ ଏଠିକି କେତେ ବାଟ ?

ପ୍ରିନ୍ସିପାଲ - ମୋଟେ ପଚିଶ କିଲୋମିଟର ।

ଡ. ବ୍ରଜକିଶୋର - ପଚିଶ କିଲୋମିଟର !
(ସ୍କୁଟରବାଲାର ପ୍ରବେଶ - ସାର୍ ସେମାନେ ପହଞ୍ଚିଗଲେଣି - ଗାଡ଼ିରେ ଅପେକ୍ଷା କରିଛନ୍ତି କହିବା ପରେ ଡ. ବ୍ରଜକିଶୋର ଉଠିଛନ୍ତି - ସ୍କୁଟରବାଲା ଆଖି ମାରିଛନ୍ତି ପ୍ରିନ୍ସିପାଲଙ୍କୁ । ସ୍ୱଳ୍ପ ଅନ୍ଧାର ପରେ ତଳମଞ୍ଚ ଆଲୋକିତ ହୋଇଛି । ଚୌଧୁରୀ ପିଠା ଅନ୍ୟ ଦୁଇଜଣଙ୍କୁ ଦେଉଛନ୍ତି - ସମସ୍ତେ ଖାଉଛନ୍ତି)

ଚୌଧୁରୀ - କାର୍ ବାଲାଟା ବଡ଼ ହଇରାଣ କଲା, ସାର୍ !
- ଖାଲି ସେତିକି ନୁହେଁ ଆହୁରି ବି ଅନୁଭୂତି ମିଳିଛି - ହଁ !
ଆପଣଙ୍କର ଏ କଲେଜରେ ପହଞ୍ଚିବା ଏତେ ଡେରି ହେଲା କାହିଁକି ?

ଡ. ବ୍ରଜକିଶୋର - ସ୍କୁଟର ରଖି ବାବୁ ଦୋକାନରୁ ପାନ କିଣିଲେ -
ଗାଡ଼ିକି ଷ୍ଟାର୍ଟ ନିଏ ଆଉ -
କିକ୍ ମାରି ବେଦମ୍ - ତା'ପରେ ପ୍ଲକ ଖୋଲି ସଫା କରି ଗେଟ୍ ମୁହଁରେ ପହଞ୍ଚିଲା ବେଳକୁ
ୱାର୍ଣ୍ଣିଂ ବେଲ୍ ।

ଚୌଧୁରୀ - ଆପଣ ପହଞ୍ଚିଛନ୍ତି ଏବଂ ଡିଉଟି ଲିଭେ଼ଇଲେ
କିନ୍ତୁ ଆମେ ଯେ ଅଧଘଣ୍ଟାଏ ପରେ - କହୁଥିଲେ ପ୍ରିନ୍ସିପାଲଙ୍କ କଲେଜ ସମ୍ବନ୍ଧରେ ବିବରଣୀ କଥା ...

ଡ. ବ୍ରଜକିଶୋର - ଶୁଣି ନ ଶୁଣିଲାପରି ଉତ୍ତର ଦେଲିନି ଜାଣିଶୁଣି -

ଡ. ଆନନ୍ଦ - ଭଲ କଲେ -
ଗାଡ଼ି ଯଦି ହଇରାଣ କରି ନ ଥାଆନ୍ତା;
ପ୍ରିନ୍ସିପାଲ ତାଙ୍କ ବାହାପିଆ କଥା କହି ନ ଥାଆନ୍ତେ -

ଚୌଧୁରୀ - ବଦ୍‌ମାସ୍ କାର ଡ୍ରାଇଭର ସବୁ ସାରିଲା ...

ଡ. ଆନନ୍ଦ - ସବୁ ଅନର୍ଥର ମୂଳ ତ ସେଇ ଲୋକଟା କିନ୍ତୁ ସେ ସ୍କୁଟର ଚଢ଼ା ବାବୁ ବି କ'ଣ ସାର୍‌ଙ୍କୁ ଜାଣିଶୁଣି ହଇରାଣ କଲେ ?

ଚୌଧୁରୀ - ପଇସା ଦେଲାବେଳେ କାର୍ ଡ୍ରାଇଭରକୁ ଭଲକି ଦି'ପଦ ଶୁଣେଇ ତ ଦେଲେ ।
ସେ କାର୍ ଡ୍ରାଇଭର କିନ୍ତୁ ପଇସା ଯେ ନେଲାନି ...

ଡ. ଆନନ୍ଦ - ଅଧା ପଇସା ତ ମୁଁ ଦଉଥିଲି - ତାକୁ ବି ଫେରେଇଦେଲା

ଚୌଧୁରୀ - ସନ୍ଦେହ ଲାଗୁଛି ... ଏ ଜିପ୍‌ଟା

ଡ. ବ୍ରଜକିଶୋର - ପୂରା ନୂଆ - ସ୍କୁଟରବାଲାର ବଡ଼ଭାଇର -
କଣ୍ଟ୍ରାକ୍ଟର ଲୋକ -

ଗାଡ଼ି ଠିକ୍ ମେନ୍‌ଟେନ୍ କରୁଥିବ ।
ଆଉ ଅସୁବିଧା ହବନି -

ଡ. ଆନନ୍ଦ - ସବୁ ନିର୍ଭର କରେ ଡ୍ରାଇଭର ଉପରେ । ଚକ୍ରଧରଙ୍କ ଉପରେ ।

ଚୌଧୁରୀ - ଆମେ ଏଥର ୪/୫ ଟା କଲେଜ କଭର୍ କରିଯିବା -

ଡ୍ରାଇଭର - (ପ୍ରବେଶ) ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ ।
ଗାଡ଼ି ଠିକ୍ ଅଛି, ମୁଁ ଠିକ୍ ଅଛି, ବ୍ରେକ୍ ବି

ଡ. ଆନନ୍ଦ - ସବୁ ଠିକ୍ ଯେ କିନ୍ତୁ ଅଞ୍ଚଳଯାକର ରାସ୍ତା ବେଠିକ୍ -
ଧକଡ଼ ଚକଡ଼ରେ ତମ ନୂଆ ଗାଡ଼ିବି ବେଶ୍ ଧକଡ଼ ଚକଡ଼ ହଉଛି -

ଚୌଧୁରୀ - ଘରେ ପହଞ୍ଚିବା ବେଳକୁ ଦେହ ମୁଣ୍ଡ ଦରଜ ଧରିବ ।

ଡ୍ରାଇଭର - ଗଲାସନ ସତର ଲକ୍ଷ ଟଙ୍କା ରାସ୍ତା ତିଆରି ପାଇଁ ଆସିଥିଲା ·
ରାଜନୀତିଆଙ୍କଠୁଁ ଆରମ୍ଭ କରି ଚେଲା ଚାମୁଣ୍ଡା ଯାଏଁ ସମସ୍ତଙ୍କର
ହାତ ଚିକ୍କଣ, ନୂଆ ବସ୍ ଗୋଟେ ଆଉ ଏ ଜିପ୍ -
ଯାହା ବଳିଲା ରାସ୍ତାରେ ଲାଗିଛି -
ହଉ ଉଠନ୍ତୁ ଏଥର - ଖରା ଜୋର ହେଲାଣି - ପାଟ ରାସ୍ତା ...
ପୁଣି ନିରୋଳା ...
(ଖିଆ ସରିଛି, ବ୍ୟଗ୍ର ଭାବରେ ଉଠିଛନ୍ତି ସମସ୍ତେ - ଜିପ୍ ଗାଡ଼ି
ଷ୍ଟାର୍ଟ ଶବ୍ଦରେ)

[ଅନ୍ଧାର]

# ଅଷ୍ଟମ ଦୃଶ୍ୟ

।ଚତୁର୍ଥ ଦୃଶ୍ୟର ମଞ୍ଚ - ଗଛ ଓ ଅନ୍ୟାନ୍ୟ ସାମଗ୍ରୀର ପରିବର୍ତ୍ତନ।

ଚୌଧୁରୀ - (ତାଚ୍ଛଲ୍ୟରେ) ନୂଆଗାଡ଼ି ପରା - ନୂଆଁଗାଡ଼ି
କ'ଣ ହେଲା ? ଡ୍ରାଇଭର !

ଡ୍ରାଇଭର - କିଛି ହେଇନି -
ଦୈବ ଦୁର୍ବିପାକ ପାଇଁ କମ୍ପାନୀ ଦାୟୀ ନୁହେଁ -
ବ୍ୟସ୍ତ କାହିଁକି ?
ମୁଁ ଠିକ୍ ସମୟରେ ଆପଣମାନଙ୍କୁ ପହଞ୍ଚେଇ ଦେଲେ ଗଲା, କ'ଣ କହୁଛନ୍ତି ?

ଡ. ଆନନ୍ଦ - ତମ ଗାଡ଼ିକୁ କିଛି ନ ହେଉ ।
କିନ୍ତୁ ଏମିତି ହଠାତ୍ ଠପ୍ କରି ରଖିଲ କାହିଁକି ?

ଡ୍ରାଇଭର - ଦେଖୁଛି -

ଡ. ବ୍ରଜକିଶୋର - ଦେଖ - ତତ୍‌କ୍ଷଣାତ୍ ଦେଖ

(ଡ୍ରାଇଭର ମଞ୍ଚ ଭିତରକୁ ଯାଇଛି)

ଚୌଧୁରୀ - ମହରଗରୁ ଯାଇ କାନ୍ତାରରେ ... ବୁଝିଲେ ସାର୍ !
ଆଜି ବେଳା ଖରାପ

ଡ୍ରାଇଭର - (ଭିତରୁ) ଇଂଜିନ୍ ଗରମ ହେଇଯାଇଛି - ଡିଜେଲ ନୂଆ
ଗାଡ଼ି ଟିକେ ରହିଗଲେ ଥଣ୍ଡା ହେଲେ -
ଷ୍ଟାର୍ଟ ନବ ...

ଡ. ଆନନ୍ଦ - ଧେତ୍ ତେରି ...

ଡ. ବ୍ରଜକିଶୋର - ମଣିଷର ଧୈର୍ଯ୍ୟଚ୍ୟୁତି ଘଟିଲାଣି ।

ଚୌଧୁରୀ - ହଉ ଡ୍ରାଇଭର ଯାହା କରିବା କଥା କର -
ଆମ ହାତଗୋଡ଼ ପାଉନି
ଏ ଧୁ ଧୁ ଖରାବେଳେ - ଆମେ ଏଇଠି ବସୁଛୁ -

ଡ. ଆନନ୍ଦ - କାହିଁ ଗୋଟେ ଗଛ ବି ଦେଖାଯାଉନି -
ଗାଡ଼ି ଭିତର ତାତି ଯିବାରୁ ତ ଓହ୍ଲେଇ ଆସିଛୁ -
ରାସ୍ତା ଧାରରେ ନନ୍‌ସେନ୍‌ସ ଡ୍ରାଇଭର ପାଇଁ ଏ ହରକତ୍ ...
ବଡ଼ ବଡ଼ ଗଛ ଥିଲା ପରି ଲାଗୁଛି -
କିଏ କରତ ଲଗେଇ କାଟିନେବା ପରି ଲାଗୁଛି ।

ଡ. ବ୍ରଜକିଶୋର - ରାସ୍ତାକାମ ବାହାନାରେ କଣ୍ଟ୍ରାକ୍ଟର ଏ ସବୁ କାଟିନେଇ ବିକି ଦେଇଥିବ -

ଚୌଧୁରୀ - କି ଗୁଣ ଗାଇବା - ଖଜୁରି ଗଛ ପରା ମୂଳରୁ ପାହାଚ ପାହାଚ ।

ଡ. ଆନନ୍ଦ - ଓଃ ବଡ଼ କଷ୍ଟ ...

ଚୌଧୁରୀ - ଆପଣ ଏ ଟାଉଏଲଟା ମୁଣ୍ଡରେ ପକେଇ ଦିଅନ୍ତୁ -

ଡ. ବ୍ରଜକିଶୋର - ପୁଣି ମଣିଷ ଗୋଟେ ଜନ୍ତୁ ହାବୁଡ଼ରେ ପଡ଼ିଲା ନା କ'ଣ ?

ଚୌଧୁରୀ - ଏଥିରେ ଆଉ ସନ୍ଦେହ ଅଛି, ସାର୍ !

ଡ. ଆନନ୍ଦ - ପରୀକ୍ଷାର୍ଥୀମାନଙ୍କ ଭାଗ୍ୟ ବଡ଼ ଟାଣ -

ଡ. ବ୍ରଜକିଶୋର - ମତେ ଭାରି ଅଡୁଆ ଲାଗୁଛି

ଚୌଧୁରୀ - କାହାକୁ ଆଉ ସୁଖ ଲାଗୁଛି -
ଆଜିର ଭାଗ୍ୟ ଡୋରିଟା ତ ଏଇ ମୂର୍ଖ ଡ୍ରାଇଭରଗୁଡ଼ାଙ୍କ ହାତରେ ରହିଛି - ଭୋଗିବା ନିଶ୍ଚୟ -

ଡ. ବ୍ରଜକିଶୋର - ଏ ଖରାଟାରେ ଭାଜି ହେଇଯିବା -
(ବାରମ୍ବାର ଗାଡ଼ି ଷ୍ଟାର୍ଟ ନେଉଛି ଏବଂ ବନ୍ଦ ହେଉଛି)
କ'ଣ ଡ୍ରାଇଭର ହେଲା ?

ଡ୍ରାଇଭର - ଆଜ୍ଞା !
ଆପଣମାନେ ଶୂନକୁ ମୋ ଉପରେ ବିରକ୍ତ ହଉଛନ୍ତି -
ମୁଁ ତ ଚେଷ୍ଟା କରୁଛି -

ଦୟାକରି ମତେ ଟିକିଏ ସାହାଯ୍ୟ କରନ୍ତୁ -
ପଛରୁ ଜିପ୍‌ଟାକୁ ଠେଲିଦେଲେ ନିଶ୍ଚୟ ଷ୍ଟାର୍ଟ ନେବ -
ଇଏ କ'ଣ ସାର୍ ପଙ୍ଖାତଳେ ବସି ପିଲାଙ୍କୁ ପଢ଼ାଇବା ହୋଇଛି ?

ଡ. ବ୍ରଜକିଶୋର - ଆମେ ସବୁ ବୁଢ଼ା...

ଡ୍ରାଇଭର - ଆଜ୍ଞା ମୁଁ ବି କୋଉ ପିଲା ? ଗୋଟେ ହାତରେ ଷ୍ଟିଅରିଂ ଧରି ମୁଁ ବି ଠେଲିବି -

ଡ. ଆନନ୍ଦ - ବଡ଼ ମୁସ୍କିଲ୍

(ଟାଉଏଲ୍ ଚୌଧୁରୀଙ୍କୁ ଦେଇଦେଲେ)

ଚୌଧୁରୀ - ଇଏ ତ ଉଠାଣି ରାସ୍ତା - ଆଉ ଯଦି ତିନି ଚାରିଜଣ ଆସନ୍ତେ -

ଡ୍ରାଇଭର - ଅପେକ୍ଷା କଲେ ଆସିବେ, ହେଲେ ଆପଣମାନେ ଖୁବ୍ ବ୍ୟସ୍ତ ।

ଡ. ବ୍ରଜକିଶୋର - ଗାଡ଼ିଟାକୁ ଯେକୌଣସିମତେ ଆମେ ଯଦି ବୁଲାଇଦିଅନ୍ତେ ଗଡ଼ାଣିଆରେ ଏତେ ପରିଶ୍ରମ ପଡ଼ନ୍ତା ନାହିଁ ... ଡ. ଆନନ୍ଦ ।
(ଡ. ଆନନ୍ଦ ଗାଡ଼ି ଆଉ ରାସ୍ତାକୁ ମୁଣ୍ଡ ଉଠେଇ ପକେଇ ଦେଖୁଛନ୍ତି)

ଡ. ଆନନ୍ଦ - ଅଗତ୍ୟା ନିୟମ ନାସ୍ତି -
ଚେଷ୍ଟା କରିବାରେ ପଛେଇବା କାହିଁକି ? ମୁଁ ଭାବୁଛି ...

ଡ. ବ୍ରଜକିଶୋର - କ'ଣ ଭାବୁଛ ଡ. ଆନନ୍ଦ, ସ୍ପଷ୍ଟ କରି କୁହ ... ?

(ଚେଷ୍ଟା କରିଛନ୍ତି - ଟିକିଏ ହଲିଛି ଗାଡ଼ି)

ଡ. ଆନନ୍ଦ - ଚୌଧୁରୀ ଟିକିଏ ଦୟାକରି ହାତ ଲଗେଇ ଦିଅନ୍ତୁ

ଡ. ବ୍ରଜକିଶୋର - ଏବେ ତ ବୁଲିଗଲା ...

ଡ୍ରାଇଭର - ଜୋର କରି ସମସ୍ତେ ଠେଲି ଦିଅନ୍ତୁ, ହଁ ...
ଏକ ସଙ୍ଗରେ ବଳଖର୍ଚ୍ଚ କରନ୍ତୁ ।
(ଗାଡ଼ି ଷ୍ଟାର୍ଟ ନେଇଛି - ଝୁଙ୍କିଯାଇ ଷ୍ଟାର୍ଟ ନେଇଥିବାରୁ ଚୌଧୁରୀଙ୍କ ମୁହଁ ଜିପ୍ ପଛରେ ମାଡ଼ିହେଇଯାଇଛି)

ଚୌଧୁରୀ - (ଯନ୍ତ୍ରଣାରେ ଚିତ୍କାର) ଓଃ... ଓଃ... ଓଃ...

ଡ. ଆନନ୍ଦ - ଡ୍ରାଇଭର୍ ବ୍ରେକ୍ ଦିଅ ... ବ୍ରେକ୍ ... ସାର୍ ପଡ଼ିଗଲେ ... ପଡ଼ିଗଲେ ...

ଡ. ବ୍ରଜକିଶୋର - ଓଃ ନାକଟାରେ ଜିପ୍ ପଛଟା ମାଡ଼ ହେଇଛି ।

ଡ. ଆନନ୍ଦ - କ୍ଷତଟା ... ଗଭୀର (ଗାମୁଛା ଚିରି ନାକ ଉପରେ ଧରି ନେଇ)
ମୁଁ ... ମୁଁ ... ଚାପି ଧରିଛି କ୍ଷତ ଉପରେ ...
ଆଗ ହସ୍‌ପିଟାଲ ଯିବାକୁ ହବ -

ଡ. ବ୍ରଜକିଶୋର - କ'ଣ କରିବା ? (ଦୀର୍ଘଶ୍ୱାସ) ମୁଁ ମନା କରୁଛି -

ଡ୍ରାଇଭର - ମତେ ଗାଳି କଲେ ମୁଁ କ'ଣ କରିବି -
ଗାଡ଼ି ଷ୍ଟାର୍ଟବେଳେ ଆଗ୍‌କୁ ତ ଝୁଙ୍କିଯାଏ -
ଆପଣ ହୁସିଆର ହେବା କଥା -

ଡ. ଆନନ୍ଦ - ବେଶି ବକ୍ ବକ୍ ଆଉ କରନି -
ଡାକ୍ତରଖାନାକୁ ଆଗ ଚଲା -

ଚୌଧୁରୀ - ଓଃ ... ଓଃ ...

ଡ. ବ୍ରଜକିଶୋର - ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ବରଂ ଆମର ଡେରି ହେଉ
ଆଗ ଆପଣଙ୍କର ଚିକିତ୍ସା ...

ଡ୍ରାଇଭର - ପଛକୁ ଅଠର କିଲୋମିଟର ପରେ ପାଖ ଡାକ୍ତରଖାନା -

ଡ. ଆନନ୍ଦ - ଆଚ୍ଛା କନକବର୍ଦ୍ଧନପୁରରେ କ'ଣ ଡାକ୍ତରଖାନା ନାହିଁ ?

ଡ୍ରାଇଭର - ଅଛି ଯେ କିନ୍ତୁ ଡାକ୍ତରଖାନା ଅଧିକାଂଶ ସମୟ ବନ୍ଦ ଶୁଣିଛି -
କେବଳ ସକାଳୁ ଖୋଲେ -
ନୂଆ ଡାକ୍ତର ଜଣେ -
ସେ ଖାଲି ଗାଁକୁ ଦଉଡ଼ା ଦଉଡ଼ି କରୁଛନ୍ତି ।

ଡ. ଆନନ୍ଦ - ତା'ହେଲେ ଗାଡ଼ି ବୁଲିବା ଆଉ ଆବଶ୍ୟକ ନାହିଁ -
ଆମର କଲେଜ ପରିଦର୍ଶନ ସେତିକି ଥାଉ -

(ଗାଡ଼ି ଚାଲିବା ଶବ୍ଦ)

[ଅନ୍ଧାର]

## ନବମ ଦୃଶ୍ୟ

(ସରପଞ୍ଚ ନେତ୍ରାନନ୍ଦ ନାୟକଙ୍କ ଘର)

ବୁଦ୍ଧିଆ - ଝାମେଲା - ଏଁ ? ପୁଣି ମୋ ଦୁଆରେ:
ଜାଣ ସରପଞ୍ଚେ ! ମୋ ତିରିଲା,
ଏ ସବୁ ମୋଟେ ପସନ୍ଦ କରେନା
ମୋ ଉପରେ ମାର୍ ନ ମାରେ
ଯେତେ ବୁଝେଇଲେ କ'ଣ ଶୁଣିଲା; ସେଇ ପାଟିତୁଣ୍ଡ
ଖଣ୍ଡମଣ୍ଡଳ କମ୍ପିଲା - ମାନ ମହତ ପଦାରେ ପଡ଼ିଲା -

ନେତ୍ରାନନ୍ଦ - ଏ ଗୁରା ଦେହସୁହା ଆମର । ଆରେ
'ସୂତା ମାଜିଲେ ସରୁ,
କଥା ମାଜିଲେ ଗୁରୁ'
ଏଇ କଥାକୁ ଧରିବସିଲେ ଚଳିବ ?
ଆଜି ଫୁଲମାଳ କୋଟି ଆଦର
କାଲିକି ହତାଦର ଜୋତାମାଳ
ରାଜନୀତିଆ ଲୋକଙ୍କର ଯା ପରା ମୂଳମନ୍ତ୍ର
'ପଇଡ଼, ବଇଦ, ମଦଘଡ଼ା,
କାମ ସଇଲେ ଗଡ଼ଗଡ଼ା'

ବୁଦ୍ଧିଆ - ସେ ଦି'ଜଣ ଦାଣ୍ଡରେ ବସିଛନ୍ତି. -
ସେମାନଙ୍କର ପଇସା ଦରକାର - ଆଉ ଫଇସଲା ବି ଦରକାର
ଆଗରୁ ଦି' ହଜାର ଲେଖାଏଁ ନେବେ ବୋଲି କଥା ଛିଡ଼ିଥିଲା -
ଆପଣ କିନ୍ତୁ ବାରଶହ ଲେଖାଏଁ ଦେଇଥିଲେ ।

ନେତ୍ରାନନ୍ଦ - (ରହି, ଚିନ୍ତା କରି, ପକେଟରୁ ଚିପା ଛୋଟ ଖାତାଟିକୁ କାଢ଼ି ଦେଖି)
ହୁଁ ...
ବାରଶହ ଲେଖାଏଁ ଦି' ଜଣ, ତା'ହେଲେ ଚବିଶ ଶହ ।
(ମୁଣ୍ଡ ହଲେଇ) ଶଳେ ଆଉ କୋଉଠୁ ଦିନଭରି କେତେ ବେଶି
ରୋଜଗାର କରିଥାଆନ୍ତେ ?
କେତେ ତାଡ଼ି ପକେଇଥାଆନ୍ତେ, କିରେ ?
ଆରେ ସରକାରୀ ସ୍କ୍ୱାର୍ଡ ପାର୍ଟି ଠୁଁ ପାଉଣା କ'ଣ ଆଣି ନ ଥିବେ ?

ବୁଦ୍ଧିଆ - ଆଉ କ'ଣ ମାଗଣାରେ ସେମାନଙ୍କୁ ବୁଲେଇଥିବେ ?

ନେତ୍ରାନନ୍ଦ - ସେମାନେ ୟା'ଙ୍କର ଜୋଇଁ ପୁଅ ତ ?

ବୁଦ୍ଧିଆ - ଗୋଟେ ପଇସା ନେବାକୁ ମନା କରୁଛି -
ଆରଟା ସେମାନଙ୍କଠୁଁ ସାତ ଶହ ଆଣିଛି ।

ନେତ୍ରାନନ୍ଦ - ତା'ହେଲେ ? ଡାକ ସେମାନଙ୍କୁ

(ବୁଦ୍ଧିଆ ଭିତରକୁ ଯାଇଛି)

ପରଧନ ଗୁଡ଼ ମୁଆଁ ଲୋଭର ପୁଣି ତ ସୀମା ଅଛି -
(ଡ୍ରାଇଭର-୧ ଏବଂ ଡ୍ରାଇଭର-୨ ବୁଦ୍ଧିଆ ସହ ଆସିଛନ୍ତି -
ସରପଞ୍ଚଙ୍କୁ ନମସ୍କାର କରିଛନ୍ତି - ଡ୍ରାଇଭର ଦୁଇଜଣଙ୍କ ଭିତରେ
ଗଣ୍ଡଗୋଳ ହୋଇଥିବା ନିଜ ନିଜ ପରିଧାନରୁ ସ୍ପଷ୍ଟ ହେଉଥିବ -
ଡ୍ରାଇଭର-୨ର ମୁହଁ ସାମାନ୍ୟ ଫୁଲିଯାଇଥିବ)
ଆରେ ତମେ ଦି'ଟା କ'ଣ ମାଡ଼ଗୋଳ କରୁଥିଲ ନା କ'ଣ ?

ଡ୍ରାଇଭର - ୨ - ଆପଣ ବିଚାର କରନ୍ତୁ -
ୟାର ବୟସ କେତେ ଦେଖନ୍ତୁ -
ମତେ ମାରି ମୋ ଗାଲ ହେଁ ଉଚ୍ଚାରେ ଫୁଲେଇଦେଇଛି -
ବୁଦ୍ଧିଆଭାଇ ଟଙ୍କା ଦି' ହଜାର ଦେଇଥିଲେ -
ଅଧା ନବାକୁ ୟାର ଜିଦ୍ -
ମୁଁ କେତେ ପରିଶ୍ରମ କଲି -
ସେ ବୁଢ଼ାଟାର ନାକ ଫାଟିଲା ଯେ,

ଡାକ୍ତରଖାନା ପର୍ଯ୍ୟନ୍ତ ନେଇ ପୁଣି ସେମାନଙ୍କ ଘରେ ଛାଡ଼ିଲି
ଇଏ ଅଧା ଆଜ୍ଞା କେମିତି ନବ ?
ଦି' ହଜାରରୁ ?

ନେତ୍ରାନନ୍ଦ - ଟଙ୍କା ଦି' ହଜାର !
(ନେତ୍ରାନନ୍ଦ ବଡ଼ ବଡ଼ ଆଖିରେ ବୁଢ଼ିଆକୁ ଚାହିଁଛନ୍ତି - ବୁଢ଼ିଆ ଶଙ୍କିତ - ବୁଢ଼ିଆ ଶଙ୍କାର ପରିମାଣ ନେତ୍ରାନନ୍ଦଙ୍କ ଆଖି ତରାଟିବା ସଙ୍ଗେ ତାଳମେଳ ରକ୍ଷା କରିବ - ହଠାତ୍ ଦୃଷ୍ଟି ଫେରେଇ ନେଲେ ନେତ୍ରାନନ୍ଦ)

ଡ୍ରାଇଭର - ୧ - କେମିତି ଅଧା ନ ନେବି - ସାର୍ !
ଟ୍ୟାକ୍ସି ଆସୋସିଏସନବାଲାଙ୍କୁ ଖୁଆଇଲି ପିଆଇଲି
ବୋଝେଇ ଭଙ୍ଗା ଶଗଡ଼ର ଶଗଡ଼ ସଜାଡ଼ିଲି -
ଏ ସବୁ କ'ଣ ମୋର ଖର୍ଚ୍ଚା ନୁହଁ ?
ଆପଣ ଆଜ୍ଞା ! ବିଚାର କରନ୍ତୁ -

ନେତ୍ରାନନ୍ଦ - ଏ ବର୍ଷ ପରୀକ୍ଷା ସିନା ସରିଗଲା ।
ପୁଣି ପରୀକ୍ଷା ଆସିବ-
ସେତେବେଳେ ଦେଖିବା ... ଯାଅ ।

ଡ୍ରାଇଭର - ୧ - ନାଇଁ .... ବାବୁ, ଆମ କଥା ବିଚାର ନ ହେଲେ ଆମେ ସବୁ ଗୁମର ଖୋଲିଦବୁ ।

ନେତ୍ରାନନ୍ଦ - ଏଁ ... ଏଁ ... ଏଁ ...
ହି ... ହି ... ହି ... (ହସ) ଗୁମର ଖୋଲିଦବ -
କୋଉଠି ... କୋଉଠି ଖୋଲିବ ... କିରେ ? ? ?

ଡ୍ରାଇଭର - ୨ - ପୋଲିସ୍ ... ସାମ୍ବାଦିକ ... ସରକାର ... କାଉନସିଲ୍
ଆଉ ଯୋଉଠି ଯୋଉଠି ଦରକାର ସେଇଠି ...

ନେତ୍ରାନନ୍ଦ - ଚୋପ୍ ... (କଅଁଳେଇ)
ନିଶ ଦାଢ଼ି ବାଳ ସିନା ତମର ପାଚିଗଲାଣି -
ହେଲେ ତମେ ସବୁ ପିଲାଲୋକ ...

ଗୁରୁତୁଲ୍ୟ ସୁରପ୍ରତାପକୁ ଯୋଉଠି ନିଷ୍କ୍ରିୟ କରିଦେଇଛି ...
ସେଇଠି ତମେ ସବୁ ...
ତିଷ୍ଠିବ ? (ହସ) ଆରେ ବାୟାଗୁଡ଼ାକ ...
ବୁଦ୍ଧିଆ !
ଠେଙ୍ଗାଟାକୁ ଆଣିଲୁ ।
(ହାତତାଳି ତିନିଟା ମାରିଛନ୍ତି - ଭିତରୁ ଦୁଇଜଣ ଗୁଣ୍ଡା ଶ୍ରେଣୀୟ ଲୋକ ଆସି ନେତ୍ରାନନ୍ଦଙ୍କ ଆଖି ଇସାରାରେ ଦୁଇ ଡ୍ରାଇଭରଙ୍କୁ ନେଇଯାଇଛନ୍ତି)

ନେତ୍ରାନନ୍ଦ - ଶଳେ !
ବିଛା ମନ୍ତ୍ର ନ ଜାଣି ସାପ ଗାତରେ ହାତ ଭର୍ତ୍ତି କରୁଛନ୍ତି ...
କ'ଣ ବୁଦ୍ଧିଆ ?
ନରପତି ଆଗେ କରି ଗୁହାରି
ଦଣ୍ଡ ଦିଆଇବୁ ହେ ବଂଶୀଧାରୀ ।
ଶଳା ଜାଣି ନାହାନ୍ତି ଆଜିକାଲି
ରାଜନୀତିରେ ପରା ଚାରିଆଡ଼େ ପଲିଟିକ୍ସ ପଶିଯାଇଛି ।

ବୁଦ୍ଧିଆ - ହେଲେ ଧମକ ଦେଇଗଲେ ଯେ ...

ନେତ୍ରାନନ୍ଦ - ନେଉଳ ଦଉଡ଼ କିଆବାଡ଼ ଯାଏଁ
(ହସର ଲହରୀ, ହସର ତାଳେ ତାଳେ ବୁଦ୍ଧିଆ ବସି ପଡ଼ିଛି ନେତ୍ରାନନ୍ଦଙ୍କ ଗୋଡ଼ଧରି)

ବୁଦ୍ଧିଆ - ମିଛରେ କ'ଣ ମୁଁ ଗୁରୁ କରିଛି

ନେତ୍ରାନନ୍ଦ - (ଖୁସିରେ) ବୋକାଟାଏ ....

[ଅନ୍ଧାର]

## ଶେଷ ଦୃଶ୍ୟ

(ସୁରପ୍ରତାପ୍‌ଙ୍କ ଘର)

ସୁରପ୍ରତାପ - ରମାବୋଉ ! ରମାବୋଉ !

ରମାବୋଉ - ଦୁଧ ଏଣେ ଉତୁରି ପଡୁଛି । ଯାଉଛି ... (ରହି)
କ'ଣ କାହିଁକି ଡାକୁଥିଲ ?

ସୁରପ୍ରତାପ - ଯେତେ ଯାହା କଲେ ବି ଏମାନେ ମତେ ଛାଡ଼ିବେନି -
ସକାଳୁ କବାଟ ଖୋଲୁ ଖୋଲୁ ଦି' ଜଣ ।
ଗାଁର ଅନ୍ୟମାନେ ଯେତେ ଯାହା
ବୁଝେଇଲେ ସେମାନେ କାହାରି କଥା ଶୁଣିଲେନି ।

ରମାବୋଉ - ସରପଞ୍ଚ ନେତ୍ରାନନ୍ଦଙ୍କ ପାଖକୁ ଗଲେନି -

ସୁରପ୍ରତାପ - ସିଏ ପରା ଅସଲ ମୁଦାଲା ।

ରମାବୋଉ - ମାନେ ?

ସୁରପ୍ରତାପ - ବୁଝିଲ ରମାବୋଉ !
କଥାର ରହସ୍ୟ ଏବେ ଖୋଲିଗଲାଣି -
ଯୋଉମାନେ ସରପଞ୍ଚଙ୍କ ବୁଦ୍ଧିରେ ପରିଚାଳିତ ହେଇ
ଦି' ଦି'ଟା ସ୍କ୍ୱାର୍ଡ ପାର୍ଟିକୁ ବାଟବଣା କରିଥିଲେ ସେଇମାନେ ଚୁପ୍
ଚାପ୍ ହେଉଛନ୍ତି ।
ସରପଞ୍ଚ କହିବାନୁସାରେ ସେମାନଙ୍କୁ ଯାହା
ପାଉଣା ଦବା କଥା ଦେଲେନି - ସେଇଠୁ ତ ଗଣ୍ଡଗୋଳ ।
ଏ ଦି'ଟା ଯୋଉ ଆସିଥିଲେ ଦି'ଜଣଯାକ ଡ୍ରାଇଭର
ଟଙ୍କା ହଜାରେ କମ୍ ବେଶି ଲାଗି ହାତାହାତି ... ।
କହିଲେ ଦୁଇହଜାର ଲେଖାଏଁ ଦେବେ ଡ୍ରାଇଭର ପିଛା ।
ଏବେ କାମ ସରିଲା ପରେ ହଜାରେ ଲେଖାଏଁ ଯାଚୁଛନ୍ତି ।

ରମାବୋଉ - ଏତେ ପଇସା ସରପଞ୍ଚ ଆଣୁଛି କୋଉଠୁ ?
ସୁରପ୍ରତାପ - ତମକୁ ପରା ସେଦିନ ସବୁ କଥା କହିଥିଲି ।
ସବୁ ଚାନ୍ଦାରୁ ।
କଲେଜ ପରିଚାଳନା କମିଟିରୁ, ପିଲାମାନଙ୍କ ଅଭିଭାବକମାନଙ୍କଠୁଁ,
ଅଧ୍ୟାପକମାନଙ୍କଠୁଁ ।
ତମେ କ'ଣ ଜାଣିନ ଯେ ତା'ର ଚୋରା ମଦଦୋକାନ ଦୁଇଟା ବି
ଅଛି ।
ରମାବୋଉ - ଜାଣେ ପରା । ତମେ ସେମାନଙ୍କୁ ବାଧା ଦେଲ ।
ସୁରପ୍ରତାପ - ହଁ ଆଉ କ'ଣ ମୁଁ ସହଯୋଗ ଦେଇଥାଆନ୍ତି ?
ଯାହା କାଲକ ହେଇନି ଆଜି ହବ ।
ଏ ସ୍କ୍ୱାର୍ଡ଼ପାର୍ଟିର ଗତିବିଧି ସମ୍ବନ୍ଧରେ ଆଗରୁ ଜାଣି
ସବୁ ଚକ୍ରବ୍ୟୂହ ରଚନା କରିଛି ଏଇ ସରପଞ୍ଚ । ନେତରା ନାୟକ ।
ରମାବୋଉ - ଆଗରୁ କ'ଣ କେହି ଜାଣିପାରିଲେନି ?
ସୁରପ୍ରତାପ - ନିଶ୍ଚୟ !
ଏ ଖବରକାଗଜର ଏ ପ୍ରବନ୍ଧଟା ପଢ଼
ରମାବୋଉ - କ'ଣ ଲେଖାଅଛି । କିଏ ଲେଖିଛନ୍ତି ?
ସୁରପ୍ରତାପ - ଡ. ବ୍ରଜକିଶୋର ରାୟ ।
ସ୍କ୍ୱାର୍ଡ଼ ପାର୍ଟିରେ ଯିଏ ଆସିଥିଲେ -
ରମାବୋଉ - ତମେ ପଢୁନା ...
ସୁରପ୍ରତାପ - ସେ କେବଳ ହାର ମାନି ନାହାନ୍ତି,
ତାଙ୍କ ବ୍ୟତୀତ ଆଉ ସାତୋଟି ସ୍କ୍ୱାର୍ଡ଼ର ସଭ୍ୟମାନେ ମଧ୍ୟ ନିର୍ଦ୍ଦିଷ୍ଟ
ସମୟ ସୀମା ଭିତରେ ପରୀକ୍ଷା କେନ୍ଦ୍ରରେ
ପହଞ୍ଚି ପାରି ନ ଥିଲେ -
କୋଉଠି ଗାଡ଼ି ଖରାପ ତ
କୋଉଠି ସ୍କ୍ୱାର୍ଡ଼ ଡ୍ରାଇଭରମାନଙ୍କ ଦ୍ୱାରା ଦିଗଭ୍ରାନ୍ତ ହୋଇ ଗୋଟେ
ଗାଁରୁ ଅନ୍ୟ ଗାଁ ଘୂରି ବୁଲୁଥିଲେ ।

କୋଉଠି ଡ୍ରାଇଭରର ହଠାତ୍ ଝାଡ଼ା, ବାନ୍ତି ବା ମୂର୍ଚ୍ଛା ବେମାରିତ ଆଉ
କୋଉଠି ଦାଦାବଟି ନ ଦେବାରୁ ଟ୍ୟାକ୍ସିକୁ ଅଟକ, କୋଉଠି ସ୍କାର୍ଡ଼
ପାର୍ଟି ଗାଡ଼ି ପେଲୁ ପେଲୁ ଦୁର୍ଘଟଣା ତ କୋଉଠି ରାସ୍ତା ଅବରୋଧ ।
ଶେଷରେ କ'ଣ ଲେଖିଛନ୍ତି ଜାଣ ?
କାଶୀର ବୃଦ୍ଧା, ନାଗରିକ, ବାଳକମାନେ ହିଁ
ଅନେକ ଶତାବ୍ଦୀ ପରେ ପରବର୍ତ୍ତୀ ଜନ୍ମ ଏଇଠି ନେଇଛନ୍ତି -
କିଏ ଟ୍ୟାକ୍ସି ଡ୍ରାଇଭର ଓ ଅଞ୍ଚଳ ଯାକର ଯେତେ କୁଜି ନେତା,
କିଏ ସରପଞ୍ଚ ବା ଆଉ କିଏ ପ୍ରଶ୍ନ ପତ୍ର ଚୋରି କରି ବିକୁଥିବା
ମାଷ୍ଟ୍ର, ନ ହେଲେ ପିଅନ
ଆଧୁନିକ ଯୁଗର ତଥାକଥିତ ବିଜ୍ଞ ପଣ୍ଡିତ ବିଚକ୍ଷଣ
ବୁଦ୍ଧିଜୀବୀମାନଙ୍କୁ
ବାରମ୍ବାର ପରାଜିତ କରୁଛନ୍ତି ଏଇମାନେ ।
ଯେପରି ଅଭିଶପ୍ତ ମହାନ୍ ବିଦ୍ୱାନ୍ କାଳିଦାସ ବିଶ୍ୱରେ ସର୍ବତ୍ର ପୂଜିତ
ହେଲେ ମଧ୍ୟ ପରାଜିତ ହେଉଥିଲେ କାଶୀରେ -

ରମାବୋଉ - ଚମତ୍କାର ଟିପ୍ପଣୀ
ବିଜିତ କାଳିଦାସର ମୂର୍ତ୍ତିମନ୍ତ ପ୍ରତୀକ ତ ତମେ ନିଜେ ।
ନ ହେଲେ ଜମି, ପାଣ୍ଠି, ପରିଶ୍ରମ ଦେଇ କଲେଜ ଗଢ଼ି ନ ଥା'ନ୍ତ ।
ସୁରପ୍ରତାପ ରାୟ ଆଜି ଲଜ୍ଜା ପାଇ ପରିଚାଳନା କମିଟିରୁ ଓହରି
ଆସି ନ ଥା'ନ୍ତେ । ତୁମେଇ ତ ପରାଜିତ କାଳିଦାସ ।
(ଉଭୟଙ୍କ ହସ)

ସୁରପ୍ରତାପ - ହେଲେ ରମାବୋଉ ! ପାର୍ଥକ୍ୟ ଗୋଟିଏ ଅଛି,
ମହାକବି କାଳିଦାସ ମୂର୍ଖ ଥିଲା ବେଳେ, ମା' ସରସ୍ୱତୀଙ୍କ
ଆଶୀର୍ବାଦ ପାଇବା ଆଗରୁ ଡାଳ ଅଗରେ ବସି ମୂଳକୁ
କାଟୁଥିଲେ ।
ଏବର କାଳିଦାସମାନେ ଶଠତା ଓ ପ୍ରବଞ୍ଚନା ଅନ୍ୟାୟ ଅନୀତି
ବିରୋଧରେ ଏକଜୁଟ ନ ହୋଇ ପରସ୍ପରର ଗୋଡ଼ି କାଟିବାରେ
ବ୍ୟସ୍ତ ।

ହେଲେ ଏ ସମୟ ସବୁଦିନ ପାଇଁ ରହିବ ନାହିଁ -
ଦିନ ଆସିବ - ସବୁ କାଳିଦାସମାନେ ଏକଜୁଟ ହୋଇ
କାନ୍ଧରେ କାନ୍ଧ ମିଶାଇ ଆଜିର ଅସୁରମାନଙ୍କର ମୁକାବିଲା କରିବେ ।
ଯୁଗେ ଯୁଗେ ପାପୀମାନଙ୍କର ବିନାଶ ଘଟୁଛି ।
ଆଜି ବି ଘଟିବ ।
ଦେଖ - ଦେଖ ସିନ୍ଦୂରା ଫାଟିଲାଣି
ସୂର୍ଯ୍ୟ ନିଶ୍ଚୟ ଉଦୟ ହେବ, ସକାଳ ନିଶ୍ଚୟ ଆସିବ ।

(ପୃଷ୍ଠ ମଞ୍ଚରୁ ସରସ୍ୱତୀ ବନ୍ଦନା ଶୁଭୁଥିବ)

ଯା କୁନ୍ଦେନ୍ଦୁ ତୁଷାର ହାର ଧବଳା ଯା ଶୁଭ୍ର ବସ୍ତ୍ରାବୃତା
ଯା ବୀଣା ବରଦଣ୍ଡ ମଣ୍ଡିତ କରା ଯା ଶ୍ୱେତ ପଦ୍ମାସନା ।
ଯା ବ୍ରହ୍ମାଚ୍ୟୁତ ଶଙ୍କର ପ୍ରଭୃତିଭିର୍ଦେବୈଃ ସଦା ବନ୍ଦିତା
ସା ମାଂ ପାତୁ ସରସ୍ୱତୀ ଭଗବତୀ ନିଃଶେଷ ଜାଡ୍ୟାପହା ।
ଶୁକ୍ଲାଂ ବ୍ରହ୍ମ ବିଚାର ସାର ପରମାମାଦ୍ୟାଂ ଜଗଦ୍‌ବ୍ୟାପିନୀ
ବୀଣା ପୁସ୍ତକ ଧାରିଣୀମଭୟଦାଂ ଜାଡ୍ୟାନ୍ଧକାର ପହାମ୍
ହସ୍ତେ ସ୍ଫଟିକ ମାଳିକାଂ ବିଦଧତୀଂ ପଦ୍ମାସନେ ସଂସ୍ଥିତାମ୍
ବନ୍ଦେ ତାଂ ପରମେଶ୍ୱରୀଂ ଭଗବତୀ ବୁଦ୍ଧପ୍ରଦାଂ ଶାରଦାମ୍

(ଯ ବ ନି କା)

---